# ନମସ୍କାର!



ମୋର ନାମ ଯୋଇସା । ମୁଁ ଋଷିୟାର ଜଣେ ବାଳକ, ଏବଂ ମୁଁ ବର୍ତ୍ତମାନ ଭାରତରେ ରହିବାକୁ ଆସିଛି । ତୁମ୍ଭ ପରି—, ମୁଁ ଡାକଟିକଟ ସଂଗ୍ରହ କରିବାକୁ ଭଲ ପାଏ–ମୁଁ ହଜାର ହଜାର ଏବଂ ବିଭିନ୍ନ ପ୍ରକାରର ଡାକଟିକଟ ସଂଗ୍ରହ କରିଛି—ଯେଉଁଥିରେକି ଫୁଲ, ପଶୁପକ୍ଷୀ, ଶୂନ୍ୟ ଆକାଶ (ସ୍ପେସ୍), ଖେଳ ଖେଳାଳି, ର ଛବି ଅଛି .... ମୁଁ ଏପରି ବର୍ଣ୍ଣନା କରିଲେ ସରିବ ନାହିଁ .....

## ତୁମ୍ଭେ ମଧ୍ୟ ଏହିପରି ଚମତ୍କାର ଡାକଟିକଟ ସଂଗ୍ରହ କରି ପାରିବ...

**ଏବଂ ଏହି ସଂଗ୍ରହ କାର୍ଯ୍ୟରେ ମୁଁ ତୁମ୍ଭଙ୍କୁ ସାହାଯ୍ୟ କରିବାକୁ ଇଚ୍ଛୁକ...**

ରୁସିଆର ଡାକଟିକଟ ମାନ ଭାରି ସୁନ୍ଦର—ଏବଂ ସେଥିରେ ଅନେକ ବିଷୟବସ୍ତୁ ଉପରେ ସୁନ୍ଦର ରଙ୍ଗିନ ଛବି ଥାଏ ।

ସେଗୁଡ଼ିକ ତୁମର ଡାକଟିକଟ ସଂଗ୍ରହ କରିବାରେ ଆନନ୍ଦ ଓ ଉତ୍ସାହ ଆଣି ଦେବ, ଏବଂ ସେଥିରୁ ତୁମେ ଅନେକ କଥା ଶିଖିବ—କେବଳ ଏତିକି ନୁହଁ—ଅନେକ ହିସାବରେ ଏ ମଧ୍ୟ ଫଳପ୍ରଦ ହେବ ।

## ବର୍ତ୍ତମାନଠୁଁ ସଂଗ୍ରହ କରିବା ଆରମ୍ଭ କର –

୧. ନିମ୍ନଲିଖିତ ବିଷୟବସ୍ତୁ ମାନଙ୍କରୁ ତୁମର ପସନ୍ଦ ବାଛ :–

- ଶୂନ୍ୟ ଆକାଶ (ସ୍ପେସ୍) • ଖେଳ ଖେଳାଳି ଏବଂ ଯାତ୍ରୀ ସଂବର୍ଦ୍ଧିୟ
- ଫୁଲ • ପଶୁପକ୍ଷୀ • କଳାଚିତ୍ର • ଜଳଜୀବ ଓ ଉଦ୍ଭିଦ
- ଯାନବାହାନ (ରେଳ, ଉଡ଼ାଜାହାଜ, ଜାହାଜ ଏବଂ ମଟରଗାଡ଼ି)
- ମହାନ୍ ଅକ୍ଟୋବର ବିପ୍ଳବ • କମ୍ୟୁନିଷ୍ଟ ପାର୍ଟି • ଲେନିନ୍
- ସବୁରକମର ମିଶ୍ରିତ ଡାକଟିକଟ ।

୨. ବର୍ତ୍ତମାନ ଆମର ଏହ ବଢ଼ିଆ ଅବଦାନକୁ ବିଗ୍ଭର କର—ତୁମ୍ଭେ କେବଳ ମୂଲ୍ୟ ଅନୁସାରେ ଡାକଟିକଟ ପାଇବ ନାହିଁ, ପରନ୍ତୁ ତା ସହିତ ଅନେକ ଆଶାତିତ ଉପହାର ଯୋଇସା ଠାରୁ ପାଇବ ।

ତା ସାଙ୍ଗକୁ ତୁମ୍ଭେ ବିନାମୂଲ୍ୟରେ ପାଇବ ଗୋଟିଏ ରଙ୍ଗବିରଙ୍ଗି ବହି ଟିକଟ ବିଷୟରେ, ପୁରା ମୂଲ୍ୟ ସୂଚି, ଆଲବମ୍, ନୂଆ ବାହାରି ଥିବା ଟିକଟ, ପ୍ରଥମ ଦିନ ବଣ୍ଟା ଯାଇଥିବା ଲଫାପା ଏବଂ ନୂଆ ଓ ପୁରୁଣା ଡାକଟିକଟମାନ ।

୩. ବର୍ତ୍ତମାନ ବିଗ୍ଭର କର କେତେ ଶୀଘ୍ର ତୁମର ଡାକଟିକଟ ସଂଗ୍ରହ କରିବ ଏବଂ ନିମ୍ନଲିଖିତ ସଙ୍କଳନରୁ ତୁମର ପସନ୍ଦ ବାଛ :—

| ସଙ୍କଳନ | ଦାମ୍ | ତୁମର ପ୍ରାପ୍ୟ | ତୁମର ପସନ୍ଦ |
|---|---|---|---|
| A | ଟ. ୨୫/ | ୫୦ ଟିକଟରୁ ଅଧିକ | ଏକ ବା ଅଧିକ ବିଷୟବସ୍ତୁ ଉପରେ |
| B | ଟ. ୫୦/ | ୧୦୦ ଟିକଟରୁ ଅଧିକ | ଏକ ବା ଅଧିକ ବିଷୟବସ୍ତୁ ଉପରେ |
| C | ଟ. ୧୦୦/ | ୨୦୦ ଟିକଟରୁ ଅଧିକ | ଅତିକମରେ ୩ଟି ବିଷୟବସ୍ତୁ ଉପରେ |
| D | ଟ. ୨୦୦/ | ୪୦୦ ଟିକଟରୁ ଅଧିକ | ଅତିକମରେ ୫ଟି ବିଷୟବସ୍ତୁ ଉପରେ |

୪. ତୁମର ପସନ୍ଦ ବାଛିଲା ପରେ ଚିନାର ଏକ୍ସପୋର୍ଟସ କୁ ଲେଖ— (କ) ତୁମର ନାମ (ଖ) ତୁମର ଠିକଣା (ଗ) ଯେଉଁ ବିଷୟବସ୍ତୁଗୁଡ଼ିକ ତୁମର ପସନ୍ଦ (ଘ) ଯେଉଁ ସଙ୍କଳନ ତୁମର ଦରକାର ।

ଏହା ସହିତ ମନିଅର୍ଡର୍ ବା ପୋଷ୍ଟଲ୍ ଅର୍ଡର ବା ବେଙ୍କ ଡ୍ରାଫଟ ଚିନାର୍ ଏକ୍ସପୋର୍ଟସ ପ୍ରାଇଭେଟ ଲିମିଟେଡ୍, ନୂଆ ଦିଲ୍ଲୀ ନାମରେ ପଠାଅ ।

**CHINAR EXPORTS PVT LTD**
101-A, Surya Kiran, Kasturba Gandhi M
New Delhi-110001. (INDIA)
Phones: 35–2023, 35–2123
• Cable: VILPANA • Telex: 314212

ତୁମ୍ଭେ ନିଶ୍ଚିତ ରୁହ ଯେ ତୁମ୍ଭକୁ ଅସଲି ଟିକଟ ମିଳିବ ଏବଂ ସେଗୁ ଭଲ ଅବସ୍ଥା ରେ ତୁମର ଅର୍ଡର ପାଇବାର ୨ ସପ୍ତାହ ପରେ ତୁମ ପାଖରେ ପହଞ୍ଚିବ ।

ସୋଭିଏଟ ଡାକଟିକଟ ତୁମ୍ଭେ ମଧ୍ୟ ସମସ୍ତ କନ୍ସୋନା ଜୋତା ଦୋକାନ ଏବଂ ସୋଭିଏଟ ବହି ଦୋକାନରୁ ପାଇ ପାରି

# ଜହ୍ନମାମୁଁ

ସମ୍ପାଦକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍‌ଡୀ

ନବବର୍ଷ ଉପଲକ୍ଷେ "ଜହ୍ନମାମୁଁ" ତା'ର ପାଠକପାଠିକା ଓ ପୃଷ୍ଠପୋଷକମାନଙ୍କୁ ଗଭୀର ଶୁଭେଚ୍ଛା ଜଣାଉଛି ଏବଂ ୧୯୮୪ ପୃଥିବୀକୁ ସତ୍ୟ ଓ ଶାନ୍ତି ପଥରେ ନେଇଯାଉ, ଏଇ ପ୍ରାର୍ଥନା କରୁଛି ।

## ଅମରବାଣୀ

ଜୀବନ ଗ୍ରହଣେ ନମ୍ରାଃ ଗୃହୀତ୍ୱା ପୁନରୁନ୍ନତାଃ ।
କିଂ କନିଷ୍ଠାଃ, କିମୁ ଜ୍ୟେଷ୍ଠାଃ ଘଟୀ ଯନ୍ତ୍ରସ୍ୟ ଦୁର୍ଜନାଃ ॥

[ଖାଲିଥିଲାବେଳେ ଯେପରି ଗଡ଼ୁ ତଳକୁ ଯାଏ ଓ ପାଣି ଭର୍ତ୍ତି ହେବା ପରେ ଉପରକୁ ଉଠେ, ବୟସ ନିର୍ବିଶେଷରେ ଖଳଲୋକେ ସେହିପରି କିଛି ନଥିଲା ବେଳେ ବିନମ୍ର ଓ ଥିଲାବେଳେ ଉଦ୍ଧତ ବ୍ୟବହାର କରନ୍ତି ।]

ବର୍ଷ : ୧୭ ଜାନୁଆରି ୧୯୮୪ ଅଙ୍କ : ୭
ପ୍ରତିସଂଖ୍ୟା : ଟ. ୨-୦୦ :: ବାର୍ଷିକ ମୂଲ୍ୟ : ଟ. ୨୪-୦୦



ମାରଗୋ!

କ୍ୟାଡବରିଜ

☆ ☆ ☆ ☆ ☆

# 5 ଷ୍ଟାର

## ତମ ମନପସନ୍ଦ ଚକୋଲେଟ୍ ବାର୍




ବିଶେଷ ଲେବଲ୍‌ବାଲା ପ୍ରତ୍ୟେକ ୫00 ଗ୍ରାମ୍
ବୋର୍ଣ୍ଣଭିଟା ପ୍ୟାକ ଭିତରେ

କ୍ୟାଡବରିଜ

**ବୋର୍ଣ୍ଣଭିଟା**

ଜଲ୍‌ଦି! ଷ୍ଟକ ସୀମିତ!

OBM/1996 ORI



# ଅପୂର୍ବ ହୀରା

ମଣିଭଦ୍ର ଅନେକ ବର୍ଷ ବିଦେଶରେ ରହିବା ପରେ ନିଜ ରାଜ୍ୟକୁ ଲେଉଟି ଆସିଥାନ୍ତି । ପ୍ରଥମେ ଆସି ସେ ବହୁଦିନରୁ ଅବହେଳିତ ହୋଇ ପଡ଼ିଥିବା ନିଜର ପୈତୃକ ଘରକୁ ମରାମତି କରାଇଲେ । ବିଦେଶରୁ ତାଙ୍କ ଜିନିଷପତ୍ର ସେଯାଏ ଆସି ନଥାଏ । ସେ ଥିଲେ ହୀରା ବ୍ୟବସାୟୀ । ତେଣୁ ବ୍ୟବସାୟ ଏ ରାଜ୍ୟକୁ ଉଠାଇ ଆଣିବା ପୂର୍ବରୁ ଘରଦ୍ୱାର ମଜବୁଦ୍ କରିବା ଆବଶ୍ୟକ ବୋଲି ସେ ବୁଝୁଥିଲେ ।

ତେବେ ସାଥିରେ ସେ ଅଳ୍ପ କିଛି ହୀରା ନେଇ ଆସିଥିଲେ । ସେ ଥିଲେ ସରଳ ସ୍ୱଭାବର ଲୋକ । ସେ ହୀରା ଭିତରେ ଖଣ୍ଡିଏ ସୌଭାଗ୍ୟ-ହୀରା ଥିଲା ବୋଲି ସେ ଯାହା ତାହା ପାଖରେ କହି ପକାଇଥିଲେ । ସୌଭାଗ୍ୟ-ହୀରା ଯାହାଠିଁ ଥିବ, ତା'ର ଉନ୍ନତି ହେବ, ଲୋକଙ୍କ ମନରେ ଏଇ ବିଶ୍ୱାସ ଥିଲା ।

ହଠାତ୍ ଦିନେ ତା' ଘରେ ରାଜାଙ୍କ ସେନାପତି ଯାଇ ପହଞ୍ଚିଗଲେ ଓ ଧମକ ଦେଇ କହିଲେ, "ତମ ସୌଭାଗ୍ୟ-ହୀରାଟି ବାହାର କରି ମୋତେ ଦେଇଦିଅ । ମୋର ସୌଭାଗ୍ୟ ଉପରେ ସାରା ରାଜ୍ୟର ସୌଭାଗ୍ୟ ନିର୍ଭର କରୁଛି । ମୁଁ ଯୁଦ୍ଧରେ ସାଫଲ୍ୟ ଲାଭ କଲେ ଆମର ରାଜ୍ୟର ଆୟତନ ବୃଦ୍ଧି ପାଇବ । ତା' ସଙ୍ଗେ ସଙ୍ଗେ ରାଜ୍ୟର ଶ୍ରୀ ଓ ସମୃଦ୍ଧି ମଧ୍ୟ ଅଧିକରୁ ଅଧିକତର ହେବ । ତଦ୍ୱାରା ପ୍ରଜାମାନେ ମଧ୍ୟ ସୁଖଶାନ୍ତିରେ ରହିବେ । ତେଣୁ ବିନା ଦ୍ୱିଧାରେ ତମେ ହୀରାଟି ମୋତେ ଦେଇଦିଅ ।"

ଡରିଯାଇ ମଣିଭଦ୍ର କହିଲେ, "ହଉ ଆଜ୍ଞା, ଦେବ । କିନ୍ତୁ ମୋତେ ଟିକିଏ ସମୟ

କାଶୀନାଥ



ଦିଅନ୍ତୁ । ସବୁ ହୀରା ଭିତରୁ କେଉଁ ଗୋଟିକ ସୌଭାଗ୍ୟ-ହୀରା, ତାହା ପରଖି କରି ଦେଖିବାକୁ ପଡ଼ିବ ।"

ପରଦିନ ରାଜା ମଣିଭଦ୍ରଙ୍କୁ ଡକାଇ କହିଲେ, "ତମଠି ଯଦି ସୌଭାଗ୍ୟ ହୀରା ଅଛି, ତେବେ ତାହା ମୋତେ ତମେ ଦେବା ଉଚିତ ନୁହେଁ କି ? ରାଜାଙ୍କ ସୌଭାଗ୍ୟରେ ସମଗ୍ର ରାଜ୍ୟର ସୌଭାଗ୍ୟ । ତମେ ନଦେଇ ରଖିଛ କପରି ?"

"ମହିମା, ମୁଁ ତ ବିଦେଶରେ ଥିଲି । ଏବେ ଆସିଛି । ଆପଣଙ୍କୁ ଭେଟି ଦେବାକୁ ଆସୁଥିଲି, ସେତିକିବେଳେ ଆପଣଙ୍କ ଦୂତ ଯାଇ ମୋତେ ଡକାଇ ନେଇ ଆସିଲେ । ହେଉ ଆଜ୍ଞା, ହୀରା ଆଣିଦେବି ।" ଏହା କହି ମଣିଭଦ୍ର ବିଦାୟ ନେଲେ ।

ସେ ନଅରରୁ ବାହାରିବା ମାତ୍ରେ ମନ୍ତ୍ରୀ ତାଙ୍କୁ ଡାକି ନେଇ କହିଲେ, "ତମେ ରାଜାଙ୍କୁ ସୌଭାଗ୍ୟ ହୀରା ଦେବା କଥା କହିଲ ବୋଲି ମୋ ଗୁପ୍ତଚରଠୁଁ ଶୁଣିଲି । ଏ ରାଜା ଏତେ ଭଲ ମଣିଷ ଯେ କିଏ ନା କିଏ ତାଙ୍କଠୁଁ ସେ ହୀରା ଚୋରି କରି ନେଇଯିବ । ହୀରାଟି ମୋତେ ଦିଅ । ମୋ ମନ୍ତ୍ରଣା ଉପରେ ରାଜ୍ୟର ଭାଗ୍ୟ ନିର୍ଭର କରେ ।"

ମଣିଭଦ୍ର କହିଲେ, "ଆଜ୍ଞା, ରାଜାଙ୍କୁ ତ କହି ସାରିଛି !"

"ତାଙ୍କୁ ଅନ୍ୟ ଖଣ୍ଡିଏ ହୀରା ଦେଇଦେଲେ ସେ ପ୍ରଭେଦ କ'ଣ ବୁଝିବେ ?" ମନ୍ତ୍ରୀ କହିଲେ ।

"ହଉ ତେବେ, ସେଇଆ କରିବି ।" ମଣିଭଦ୍ର କହିଲେ ।

ସନ୍ଧ୍ୟାବେଳେ ସେନାପତି ତାଙ୍କ ପାଖରେ ପହଞ୍ଚି କହିଲେ, "ବାବୁ, ହୀରାଟି ବାହାର କଲ ? ତମେ ରାଜାଙ୍କୁ ଓ ମନ୍ତ୍ରୀଙ୍କୁ ବି ହୀରା ଦେବ ବୋଲି କହି ଦେଇଛ ବୋଲି ମୋ ଗୁପ୍ତଚରଠୁଁ ଖବର ପାଇଲି । ସେମାନଙ୍କୁ ଅନ୍ୟ ହୀରା ଦିଅ । ମୋତେ ଅସଲଟି ଦିଅ । ନଦେଲେ ତମ ପ୍ରାଣକୁ ବିପଦ ହେବ ଜାଣିଥାଅ ।"



ମଣିଭଦ୍ର ସେନାପତିଙ୍କ କଥା ଶୁଣି ବଡ଼ ବ୍ୟସ୍ତ ବିବ୍ରତ ହୋଇ ପଡ଼ିଲେ । ନିଜ ରାଜ୍ୟକୁ ଫେରି ଆସିଲେ ଆନନ୍ଦରେ ଆଉ ଏ ପୁଣି କି ନୂଆ ପ୍ରକାରର ବିପଦ । ଭାବିଚିନ୍ତି ଦେଖିଲେ ଯେ ବରଂ ରାଜା ମନ୍ତ୍ରୀ ଭଦ୍ରଭାବରେ ଯାହାକିଛି କରିବେ । କିନ୍ତୁ ସେନାପତି ତ ପ୍ରାଣ ନେବାର ଧମକ ଦେଉଛନ୍ତି । ଯେ କୌଣସି ହୀରାଟିଏ ତାଙ୍କୁ ଦେବାକୁହିଁ ହେବ । ସେ ଭିତରକୁ ଉଠିଯାଇ ଖଣ୍ଡେ ସୁନ୍ଦର ହୀରା ଧରି ଆସି ସେନାପତିଙ୍କୁ ଦେଇ କହିଲେ, "ଏଇଟି ହେଉଛି ପ୍ରକୃତ ସୌଭାଗ୍ୟ ହୀରା । ଆପଣଙ୍କୁ ମୁଁ ପ୍ରଥମେ ପ୍ରତିଶ୍ରୁତି ଦେଇଥିଲି ତେଣୁ ଦେଉଛି । ଗ୍ରହଣ କରନ୍ତୁ ।"

ପରଦିନ ରାଜାଙ୍କ ଦୂତ ଆସି ପହଞ୍ଚି କହିଲା, "ରାଜା ଅପେକ୍ଷା କରିଛନ୍ତି । ତାଙ୍କୁ କ'ଣ ଦେବା କଥା ପରା ?"

ମଣିଭଦ୍ର ଆଉ ଖଣ୍ଡିଏ ହୀରା ଧରି ରାଜାଙ୍କୁ ଦେଖା କଲେ ଓ ହୀରାଟି ଦେଇ କହିଲେ, "ଏହାହିଁ ସେ ସୌଭାଗ୍ୟ-ହୀରା ।"

ସେ ନଅରରୁ ବାହାରିବା ମାତ୍ରେ ମନ୍ତ୍ରୀ ପଚାରିଲେ, "କାହିଁ ମୋ ହୀରା ?"

ସଙ୍ଗେ ସଙ୍ଗେ ମଣିଭଦ୍ର ତାଙ୍କୁ ହୀରାଟିଏ ଧରାଇଦେଲେ ଓ କହିଲେ, "ଏଇ ଗୋଟିକ ସେ ଅସଲ ହୀରା ।" ମନ୍ତ୍ରୀ ଖୁସି ହେଲେ ।

ଦୁଇଦିନ ପରେ ହଠାତ୍ ସେନାପତି ମଣିଭଦ୍ରଙ୍କୁ ଦେଖା କରି ପଚାରିଲେ, "ତମେ ରାଜାଙ୍କୁ ବା ମନ୍ତ୍ରୀଙ୍କୁ ଅସଲ ସୌଭାଗ୍ୟ-ହୀରା ନଦେଇ ମୋତେ ଦେଇଛ ବୋଲି ପ୍ରମାଣ କ'ଣ ?"

"ଆପଣ ରାଜ୍ୟର ସବୁଠାରୁ ପ୍ରସିଦ୍ଧ ଜହୁରୀଙ୍କ ଦ୍ୱାରା ପରୀକ୍ଷା କରାଇ ଦେଖି ପାରନ୍ତି ।" ମଣିଭଦ୍ରଙ୍କ ଏ କଥା ଉପରେ ସେନାପତି କିଛି କହିପାରିଲେ ନାହିଁ ।

ପରଦିନ ମନ୍ତ୍ରୀ ତାଙ୍କୁ ସେହି ଏକା କଥା ପଚାରିଲେ ଓ ମଣିଭଦ୍ର ଏକା ଉତ୍ତର ଦେଲେ ।

ତହିଁ ପରଦିନ ରାଜା ମଣିଭଦ୍ରଙ୍କୁ ଡକାଇ ଗୋପନରେ ପଚାରିଲେ, "ମୁଁ ଶୁଣିଲି ମନ୍ତ୍ରୀ ଓ ସେନାପତି ବି ତମଠାରୁ ହୀରାଟିଏମାନ

ନେଇଛନ୍ତି । ସତ ସୌଭାଗ୍ୟ-ହୀରା କାହାକୁ ଦେଇଛ ?"

"ମଣିମା, ଆପଣଙ୍କ ଛଡ଼ା ଆଉ କାହାକୁ କପଟ ଦିଅନ୍ତି ? ସେମାନେ ମଧ୍ୟ ସତ ସୌଭାଗ୍ୟ ହୀରା ପାଇବା ପାଇଁ ଦାବୀ କରିଥିଲେ । କିନ୍ତୁ ମୋର ତ ବିବେକ ଅଛି । ମୁଁ ସେମାନଙ୍କୁ ସାଧାରଣ ହୀରା ଦେଇ ଆପଣଙ୍କୁହିଁ ପ୍ରକୃତ ସୌଭାଗ୍ୟ ହୀରାଟି ଦେଇଛି । ଆପଣଙ୍କର ସନ୍ଦେହ ହେଲେ ରାଜ୍ୟର ଶ୍ରେଷ୍ଠ ଜହୁରୀ ଦ୍ୱାରା ପରୀକ୍ଷା କରନ୍ତୁ ।" ମଣିଭଦ୍ର କହିଲେ । ରାଜାଙ୍କୁ ଏ ପ୍ରସ୍ତାବ ଉଚିତ ମନେ ହେଲା ।

ଏହାର କିଛିଦିନ ପରେ ଦିନେ ସକାଳେ ରାଜ୍ୟର ଶ୍ରେଷ୍ଠ ଜହୁରୀ ପ୍ରଭାକର ଆସି ମଣିଭଦ୍ରଙ୍କ ଘରେ ପହଞ୍ଚିଲେ ଓ କହିଲେ, "ଭାଇ, ତମ ଗୋପନ ଚିଠି ପାଇବା ପରେ ଯାହା କରିବାର କରିଛି । ତିନିଜଣଯାକ ସେମାନଙ୍କ ହୀରା ପରୀକ୍ଷା କରିବାକୁ ଦେଲେ । ପ୍ରତ୍ୟେକଙ୍କୁ କହିଛି ସେ ପାଇଥିବା ହୀରାହିଁ ଅସଲ ସୌଭାଗ୍ୟ ହୀରା !"

"ଭାଇ, ଧନ୍ୟବାଦ । ମୋତେ ରକ୍ଷା କଲ ।" ମଣିଭଦ୍ର କହିଲେ ।

"କିନ୍ତୁ ଇଏ କ'ଣ ଦେଖୁଛି ? ତମେ ଜିନିଷପତ୍ର ବନ୍ଧାବନ୍ଧି କରୁଛ କାହିଁକି ?" ପ୍ରଭାକର ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"ଭାଇ ପ୍ରଭାକର, ମୁଁ ପୁଣି ମୋ ପୂର୍ବ କର୍ମସ୍ଥଳୀକୁ ଫେରି ଯାଉଛି । ଏ ରାଜ୍ୟରେ ରହିବା ନିରାପଦ ନୁହେଁ ।"

"କାହିଁକି ?"

"ଯେଉଁ ରାଜ୍ୟରେ ରାଜା, ମନ୍ତ୍ରୀ ଓ ସେନାପତି ପ୍ରତ୍ୟେକେ ଅଲଗା ଅଲଗା ଗୁପ୍ତଚର ରଖିଥାନ୍ତି, ସେନାପତି ଓ ମନ୍ତ୍ରୀ ରାଜାଙ୍କୁ ଗୁରୁତ୍ୱ ନଦେଇ ନିଜ ନିଜ ସ୍ୱାର୍ଥ ପାଇଁ ଲୋଭାତୁର ହୁଅନ୍ତି, ସେ ରାଜ୍ୟର ଭାଗ୍ୟରେ ବିପଦ ଅନିବାର୍ଯ୍ୟ । ତେଣୁ ମୁଁ ଏ ରାଜ୍ୟ ଛାଡ଼ି ଯାଉଛି ।" ଉତ୍ତର ଦେଲେ ମଣିଭଦ୍ର






[ ୭ ]

[ ପିଙ୍ଗଳ ସେ ପର୍ବତ୍ୟଙ୍କ ମନ୍ଦିରର ଏକ ପରେ ଏକ ଦ୍ଵାର ଅତିକ୍ରମ କରି ଶେଷ ଦ୍ଵାର ପାଖରେ ପହଞ୍ଚିଗଲା । କିନ୍ତୁ ସେଠି ସେ ହଠାତ୍ ଶୁଖିଲା ପତ୍ର ଭଳି ଉପରକୁ ଉଡ଼ିଗଲା । ତଳକୁ ଖସିବା ବେଳକୁ ହାତ ବଢ଼ାଇ ପଦ୍ମପାଦ ତାକୁ ଧରିନେଲେ । ସେ ବଞ୍ଚିଗଲା । ତା'ପରେ... ]

ପଦ୍ମପାଦଙ୍କୁ ଦେଖି ପିଙ୍ଗଳ ଦେହରେ ଯେତେ ଅବା ପ୍ରାଣ ପଶିଲା ! ପଦ୍ମପାଦ ତାକୁ ଧରି ନେଇ ଧୀର ଭାବରେ ତଳେ ଠିଆ କରାଇଦେଲେ ଓ ପଚାରିଲେ, "ଆଘାତ ଲାଗିନାହିଁ ତ ?"

"ନା । ତେବେ ମୁଁ ଯେ ପ୍ରାଣରେ ବଞ୍ଚିଗଲି, ଏହାହିଁ ଆଶ୍ଚର୍ଯ୍ୟର ବିଷୟ । ଏତେ ଉପରୁ ଖସି ତଳେ ପଡିଥିଲେ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯାଇଥାନ୍ତି । ଆପଣ କେତେବେଳେ ଓ କିପରି ଏଠାକୁ ଆସିଲେ ?" ପିଙ୍ଗଳ ଟିକିଏ ଦମ୍ଭ ନେଇ ପଚାରିଲା । ତା'ପରେ ସେ ଦେଖିଲା, ନଦୀ ଗର୍ଭରେ ଥିବା ସେ ମନ୍ଦିର ପୁଣି ଧିରେ ଧିରେ ଜଳମଗ୍ନ ହେବାକୁ ଲାଗିଲାଣି ।




ପଦ୍ମପାଦ ପିଙ୍ଗଳର କାନ୍ଧ ଉପରେ ହାତରଖି କହିଲେ, "ଏଥର ଆମେ ହାରିଗଲୁଁ ପିଙ୍ଗଳ! ମହାମାୟୀଙ୍କ ଶିଷ୍ୟମାନେ ପୁଣି ନଦୀରେ ଜଳ ଭର୍ତ୍ତି କରୁଛନ୍ତି । ଅଳ୍ପ ସମୟ ଭିତରେ ମନ୍ଦିର ଜଳମଗ୍ନ ହେବ ।"

ପଦ୍ମପାଦ ଓ ପିଙ୍ଗଳ ଦୁହେଁ ବହୁତ ନିରାଶ ହେଉଥିଲେ । ଚିନ୍ତାମଗ୍ନ ଭାବରେ କ୍ରମେ କ୍ରମେ ଜଳ ଗର୍ଭରେ ଅଦୃଶ୍ୟ ହୋଇ ଆସୁଥିବା ମନ୍ଦିର ଆଡ଼େ ସେମାନେ ଅନାଇଥାନ୍ତି ।

ତା'ପରେ ଥରେ ପିଙ୍ଗଳର ପିଠି ଥାପୁଡ଼ାଇ ଦେଇ ପଦ୍ମପାଦ କହିଲେ, "ଚିନ୍ତା ନାହିଁ ପିଙ୍ଗଳ! ଯେତେବେଳେ ଦରକାର ସେତେ-ବେଳେ ପୁଣି ଆମେ ନଦୀ ଶୁଖାଇଦେଇ ପାରିବା । ବର୍ତ୍ତମାନ ତମର ଅନୁଭୂତି ଶୁଣାଅ ।"

ପିଙ୍ଗଳ ପ୍ରଥମ ଦ୍ୱାରରୁ ଷଷ୍ଠ ଦ୍ୱାର ଯାଏ ଯିବା ଭିତରେ ତା'ର ଯେତେ ଯାହା ଅଭିଜ୍ଞତା ହୋଇଥିଲା ସବୁ ଶୁଣାଇଲା ।

"ଷଷ୍ଠ ଦ୍ୱାରରେ ପହଞ୍ଚି ତୁମକୁ ଦେଖି ମୁଁ ଚମକି ପଡ଼ିଲି । ତମ କଣ୍ଠସ୍ୱରହିଁ ମୋତେ ଆଉ ଆଗକୁ ନ ଯିବାକୁ ନିର୍ଦ୍ଦେଶ ଦେଲା । ତେଣୁ ମୁହୂର୍ତ୍ତକ ପାଇଁ ମୁ ଦ୍ୱନ୍ଦରେ ପଡ଼ିଲି । ସେତିକିବେଳେ ଆଖି ଝଲସାଇ ଦେଲାଭଳି ତୁମର ଗଦା ଚମକି ଉଠିଲା । ମୋର ଆଖି ବୁଜି ହୋଇଗଲା । ବାସ୍ । ପରେ ପରେ ମୋ ପିଠିରେ ଲଠି ପାହାର ପଡ଼ିଲା । ତା'ପରେ କୌଣସି ଦୈତ୍ୟ ଯେପରି ମୋତେ ଧରି ପକାଇ ଶୂନ୍ୟକୁ ଫୋପାଡିଦେଲା । ଆସି ତଳେ ପଡ଼ିବା ପୂର୍ବରୁ ତୁମେ ଯଦି ହାତ ବଢ଼ାଇ ଧରି ପକାଇ ନଥାନ୍ତ, ତେବେ କଥା ସରିଥିଲା !"

"ଓହୋ, କଥା ତା'ହେଲେ ଏପରି!" ରୋଷପୂର୍ଣ୍ଣ କଣ୍ଠରେ ପଦ୍ମପାଦ ଶୂନ୍ୟକୁ ଅନାଇ କହିଲେ । "ମହାମାୟୀର ଶିଷ୍ୟ ମୋ ଓଟହେଇ ଧରି ତମକୁ ହତଚକିତ କରିଦେବେ, ଏ କଥା ମୁଁ କଳ୍ପନା କରି ନଥିଲି । ସେ ଯା ହାହେଉ, ତମେ ଗୋଟିଏ ପରେ ଗୋଟିଏ ଦ୍ୱାର ଯେପରି ସାହସ ସହକାରେ ଟପିଗଲ, ତାହା କମ୍ କଥା ନୁହେଁ । ତମକୁ ଅଭିନନ୍ଦନ ଜଣାଇବା କଥା ।" ପଦ୍ମପାଦ କହିଲେ ।

ପିଙ୍ଗଳ ଖୁସି ହେଲା । ସେତେବେଳକୁ ମନ୍ଦରର ବଡ଼ ଅଂଶ ଜଳମଗ୍ନ ହୋଇ ସାରିଲାଣି । ସେ କହିଲା, "ପଦ୍ମପାଦ ! ମନ୍ଦର ତ ଆଉ ଅଳ୍ପ ସମୟ ଭିତରେ ଅଦୃଶ୍ୟ ହୋଇଯିବ । ଯାହା କରିବାର ଶୀଘ୍ର କର ।"




ପଦ୍ମପାଦ ତାକୁ ଭରସା ଦେଇ କହିଲେ, "ବର୍ତ୍ତମାନ କିଛି କରିବା ସମ୍ଭବ ନୁହେଁ, ପିଙ୍ଗଳ! ତେବେ ଚିନ୍ତା ନାହିଁ । ଆଉ ତିନିଦିନ ପରେ ଗୋଟାଏ ବିଶେଷ ଶୁଭଦିନ ଅଛି । ଯାହା କରିବାର ପୁଣି ସେଦିନ କରିଯିବ । ଏ ତିନିଦିନ କାଳ ଆମକୁ ଏଇଠି ରହିବାକୁ ପଡିବ । ଏ ତିନିଦିନ ତମେ କିଛି ମଉଜ୍ ମଜ୍‌ଲିସ କରିପାର !"

ଏହା କହି ପଦ୍ମପାଦ ଗଦା ବୁଲାଇ ଦେଲେ ଓ ଗୋଟାଏ ମନ୍ତ୍ର ପଢ଼ିଲେ । ସଙ୍ଗେ ସଙ୍ଗେ ସେହି ନିର୍ଜନ ପ୍ରଦେଶରେ ଗୋଟାଏ ସୁନ୍ଦର ମହଲ ଫୁଟି ଉଠିଲା ।

ପିଙ୍ଗଳ ତାହା ଦେଖି ବିସ୍ମୟାଭିଭୂତ ହେଲା । ପଦ୍ମପାଦ ପିଙ୍ଗଳର ହାତ ଧରି ସେ ମହଲ ଆଡ଼େ ନେଇଗଲେ । ଫାଟକ ପାଖରେ ପହଞ୍ଚିବା ମାତ୍ରେ ଫାଟକ ଆପଣାଛାଏଁ ଖୋଲିଗଲା । ଲମ୍ବ ଲମ୍ବ ହାତ ଥିବା ଦୁଇଟା ଭୀଷଣାକାର ଲୋକ ସେମାନଙ୍କୁ ଜୁହାର କଲେ ।

ପିଙ୍ଗଳର ବିସ୍ମୟର ଅନ୍ତ ନଥାଏ । ସେ ମହଲର ସୌନ୍ଦର୍ଯ୍ୟ ଆଶ୍ଚର୍ଯ୍ୟ ହୋଇ ଦେଖୁଥାଏ । "ଏ ଲୋକ ଦୁଇଟି କିଏ ?" ସେ ପଚାରିଲା ।

"ଇଏ ହେଲା ଯାଦୁପୁରୀ । ଯାଦୁପୁରୀରେ ଏମାନେ ଆମର ମନୋରଞ୍ଜନ କରିବେ । ଆମ ଆଗରେ ଲାଠି ଖେଳ ଓ କୁସ୍ତି ପ୍ରଦର୍ଶନ କରିବେ ।" ପଦ୍ମପାଦ ଉତ୍ତର ଦେଲେ ।

ପଦ୍ମପାଦ ଓ ପିଙ୍ଗଳ ମହଲ ଭିତରେ ପ୍ରବେଶ କଲେ । ଅନ୍ୟ ଏକ ଦ୍ୱାର ପାରି ହୋଇ ସେମାନେ ଗୋଟିଏ ପ୍ରଶସ୍ତ କକ୍ଷରେ ଆସି ପହଞ୍ଚିଲେ । ସେଠାରେ ଅନେକ ଗୁଡ଼ିଏ ପହିଲମାନ କୁସ୍ତି କରୁଥିଲେ । ସେମାନେ ଦେଖିବାକୁ ଦୈତ୍ୟମାନଙ୍କ ପରି । ପିଙ୍ଗଳ ଟିକିଏ ଶଙ୍କିଯାଇ ପଦ୍ମପାଦଙ୍କୁ ପଚାରିଲା, "ଏ




ଭୀଷଣାକୃତି ମଣିଷମାନେ ଆମର କୌଣସି କ୍ଷତି କରିବେ ନାହିଁ ତ ?"

"ନା, ନା, ଭୟର କାରଣ ନାହିଁ । ଏମାନେ ଆମର ସେବକ । ଆମର ସହାୟତା କରିବା ନିମନ୍ତେ ଏଠି ରହିଛନ୍ତି ।" ପଦ୍ମପାଦ ପିଙ୍ଗଳକୁ ସାହସ ଦେଇ କହିଲେ ।

ଏହାପରେ ପଦ୍ମପାଦ ଭିତରକୁ ନେଇ ଆସିଥିବା ଦୁଇ ରାକ୍ଷସଙ୍କୁ କିଛି କହିଲେ । ସେ ଦୁହେଁ ସେଠୁ ଚାଲିଗଲେ । ସେ ବିଶାଳ କକ୍ଷରେ ସୁନ୍ଦର ଆସନମାନ ଥିଲା । ପଦ୍ମପାଦ ବସିଲେ ଓ ପିଙ୍ଗଳକୁ ବସାଇଲେ । ସଙ୍ଗେ ସଙ୍ଗେ କେତେଜଣ ସୁନ୍ଦରୀ ସୁବର୍ଣ୍ଣଥାଳରେ ନାନା କିସମର ଖାଦ୍ୟଦ୍ରବ୍ୟ ଧରି ଆସି ପହଞ୍ଚିଗଲେ ।

ପିଙ୍ଗଳ ଚୁପି ଚୁପି ପଦ୍ମପାଦଙ୍କୁ ପଚାରିଲା, "ଏମାନେ ତ ଅପ୍ସରା ଭଳି ମନେ ହେଉଛନ୍ତି । ଏମାନେ କି କ'ଣ ଯାଦୁ ଶକ୍ତି ଦ୍ୱାରା ସମ୍ଭବ ହୋଇଛନ୍ତି ? ଏମାନେ ମାୟାବିନୀ ନୁହନ୍ତି ତ ?"

ପଦ୍ମପାଦ ପିଙ୍ଗଳର ହାତ ଚିପି ଦେଇ ମୃଦୁ କଣ୍ଠରେ କହିଲେ, "ସାବଧାନ, ଏ ବିଷୟରେ କିଛି ପଚାର ନାହିଁ । ଏମାନେ ଯାହା ହେଲେ ବି ଆମ ସେବା ପାଇଁ ଏଠାକୁ ଆସିଛନ୍ତି । ତମ କଥା ଶୁଣିଲେ ଏମାନେ ଅପମାନ ଅନୁଭବ କରିବେ ।"

ପଦ୍ମପାଦ ଓ ପିଙ୍ଗଳ ଭୋଜନ ଆରମ୍ଭ କରିବା ମାତ୍ରେ ସେମାନଙ୍କ ଆଗରେ କୁସ୍ତୀଗୀର୍ ମାନେ ନିଜ ନିଜ ବିଦ୍ୟା ପ୍ରଦର୍ଶନ କରିବାକୁ ଲାଗିଲେ । ସେମାନେ ବାରମ୍ବାର ନିଜ ନିଜ ରୂପ ବି ପରିବର୍ତ୍ତନ କରୁଥାନ୍ତି ।

ତିନିଦିନ ଏହିପରି ଭାବରେ ବିତିଗଲା । ଚତୁର୍ଥ ଦିନ ପଦ୍ମପାଦ ସେସବୁ ରାକ୍ଷସ ଓ ମାୟାବିନୀ ମାନଙ୍କୁ ଅଦୃଶ୍ୟ କରିଦେଲେ । ମହଲ ମଧ୍ୟ ଅନ୍ତର୍ହିତ ହୋଇଗଲା । ଦୁହେଁ ଯାଇ ନଦୀ କୂଳରେ ପହଞ୍ଚିଲେ ।

ମନ୍ଦିର ଭିତରେ ଥିବା ତ୍ୟକ୍ତ ମନ୍ଦିର ଆଡ଼େ ଇଶାରା କରି ପଦ୍ମପାଦ କହିଲେ, "ପିଙ୍ଗଳ ବର୍ତ୍ତମାନ ମୁଁ ପୁଣି ନଦୀ ଜଳ ଶୁଖାଇବାକୁ ଆରମ୍ଭ କରିବି । ଆଜି ତୁମକୁ ମହାମାୟଙ୍କ ସମାଧି ପାଖକୁ ଯାଇ କାର୍ଯ୍ୟ ସମାଧା କରିବାକୁ ହେବ । ବାହାରେ କି ପ୍ରକାର ବିପଦର

ସମ୍ଭାବନା ଅଛି, ସେକଥା ତୁମେ ଜାଣ । ତୁମେ କିପରି ସତର୍କ ରହିବା ଦରକାର, ସେକଥା କହିବାର ଆବଶ୍ୟକତା ନାହିଁ ।"

ପିଙ୍ଗଳ ଉତ୍ସାହଭରା କଣ୍ଠରେ କହିଲା, "ଆଶା କରେଁ ଏଥର ମୁଁ କୌଣସି ଛଳନା ଦ୍ୱାରା ପ୍ରତାରିତ ହେବ ନାହିଁ । ଥରକର ଅଭିଜ୍ଞତାହିଁ ଯଥେଷ୍ଟ । ଦେଖାଯାଉ ମାୟାବୀମାନେ ଏଥର କ'ଣ କରୁଛନ୍ତି !"

ପଦ୍ମପାଦ ନଦୀଜଳ ଶୁଖାଇବା ନିମନ୍ତେ ମନ୍ତ୍ରଜପ ଆରମ୍ଭ କଲେ । ଗୃହୁଁ ଗୃହୁଁ ମନ୍ଦିରର ଶିଖର ଦେଖାଗଲା । ତା'ପରେ ପୁରା ମନ୍ଦିର ଦିଶିଲା । ପିଙ୍ଗଳ ନିର୍ଭୟରେ ମନ୍ଦିର ଆଡ଼େ ଅଗ୍ରସର ହେଲା ।




ପ୍ରଥମ ଦ୍ୱାରରେ ଫଁ ଫଁ କରୁଥିବା ନାଗସାପ ଦେହରେ ଯେମିତି ପିଙ୍ଗଳ ହାତ ଦେଇଛି, ସେମିତି ସାପ ନିସ୍ତେଜ ହୋଇ ତଳେ ପଡିଗଲା । ସଙ୍ଗେ ସଙ୍ଗେ ଶୁଣାଗଲା ଗୋଟାଏ ପ୍ରଚଣ୍ଡ ଶବ୍ଦ ।

"ମୁଁ ପିଙ୍ଗଳ । ଅବନ୍ତୀ ନଗରୀରେ ମୋର ନିବାସ ।" ଏହା କହି ପିଙ୍ଗଳ କବାଟ ଖୋଲିଦେଲା । ସେପଟେ ଦେଖାଦେଲା ଗୋଟାଏ ପର୍ବତାକାର ଦୈତ୍ୟ । ସେ ପ୍ରକାଣ୍ଡ ଖଡ୍ଗ ଉଞ୍ଚାଇ ପିଙ୍ଗଳକୁ ତା' କାନ୍ଧ ଦେଖାଇବାକୁ କହିଲା । ପିଙ୍ଗଳ ନିର୍ଭୟ ଭାବରେ ସେ ନିର୍ଦ୍ଦେଶ ପାଳନ କଲା । ଗୃହୁଁ ଗୃହୁଁ ସେ ପର୍ବତାକାର ଦୈତ୍ୟ ତଳେ କଚାଡ଼ି ପଡିଲା— ଯେମିତି ପୂର୍ବଥର ହୋଇଥିଲା ।

ପିଙ୍ଗଳ ଏହିପରି ଭାବରେ ସାହସର ପରିଚୟ ଦେଇ ଗୋଟାଏ ପରେ ଗୋଟାଏ ପାଞ୍ଚ ଦ୍ୱାର ଟପି ଗଲା । କିନ୍ତୁ ଷଷ୍ଠ ଦ୍ୱାରରେ ପହଞ୍ଚି ଚମକି ପଡ଼ିଲା । ସେଠାରେ ଦେଖିଲା ତା' ମା କାନ୍ଦି କାନ୍ଦି କହୁଛି, "ପୁଅ! ତୁ କାହିଁକି ପଦ୍ମପାଦର ଜାଲରେ ପଡିଲୁ ? ସେ ତୋ ପ୍ରାଣ ନେବାକୁ ଚକ୍ରାନ୍ତ କରୁଛି । ଏକଥା ବୁଝି ପାରୁନାହୁଁ ?"

ପିଙ୍ଗଳ ଟିକିଏ ଇତସ୍ତତଃ କରି ନିଜକୁ ବୁଝାଇଲା, ପୂର୍ବଥର ଭଳି ଏହା ମଧ୍ୟ ମାୟାବୀର କୌଶଳ, ଆଗଥର ପଦ୍ମପାଦର ରୂପ ନେଇ ମାୟାବୀ ତାକୁ ଠକିଥିଲା । ଏଥର ତା' ମା'ର ରୂପ ନେଇଛି ।



ସେ ଗମ୍ଭୀର ସ୍ୱରରେ କହିଲା, "ମୁଁ ଜାଣେ ତମେ କିଏ । ମୋ ମା'ର ରୂପ ନେଇ ମୋତେ ପ୍ରତାରିତ କରି ପାରିବ ନାହିଁ । ମୋତେ ରାସ୍ତା ଦିଅ ।" ଏତକ କହି ପିଙ୍ଗଳ ସେଠାରେ ଥୁଆ ହୋଇଥିବା ଖଣ୍ଡିଏ ତରବାରି ଉଠାଇ ନେଇ ସେ ନାରୀ ମୂର୍ତ୍ତି ଆଡ଼େ ଅଗ୍ରସର ହେଲା । ସଙ୍ଗେ ସଙ୍ଗେ ସେ ମୂର୍ତ୍ତି ମୂହୂର୍ତ୍ତକ ସକାଶେ ବିକଟ ଦେଖାଗଲା ଓ ତା'ପରେ ସେଠାରୁ ଅଦୃଶ୍ୟ ହୋଇଗଲା । ପିଙ୍ଗଳ ତରବାରି ସେଇଠାରେ ଥୋଇଦେଇ ଷଷ୍ଠ ଦ୍ୱାର ପାରି ହେଲା । ଆଗରେ ଗୋଟିଏ ମଖମଲ ପର୍ଦ୍ଦା ଝିଲ୍ ମିଲ୍ କରୁଥିଲା । ସେ ପର୍ଦ୍ଦା ପଛପଟେ ଖଣ୍ଡିଏ ମନୋରମ ଆସନ ଥିଲା । ସେଥିରୁ ଅଲୁଅ ଝଟକୁଥିଲା ।

ପିଙ୍ଗଳ ପର୍ଦ୍ଦା ଆଡ଼େଇ ଭିତରେ ପଶିଲା । ଭିତରେ ଥିବା ସେ ଆଲୋକମୟ ଆସନ ଉପରେ ମହ ମାତ୍ୟ ଏପରି ଢଙ୍ଗରେ ବସିଥିବାର ଦେଖାଗଲା ଯେପରିକି ସେ ଧାନସ୍ଥ । ପିଙ୍ଗଳ ମନରେ ସନ୍ଦେହ ହେଲା—ମହାମାତ୍ୟ ଜୀବିତ ନାହାନ୍ତି ତ ? କିନ୍ତୁ ସେ ନିଜକୁ ସାବଧାନ କରିଦେଲା । ଏଭଳି ସନ୍ଦେହରେ ପଡ଼ିବା ବିପଜ୍ଜନକ । ଯେଉଁ ଉଦ୍ଦେଶ୍ୟ ସାଧନ କରିବା ପାଇଁ ସେ ଆସିଛି, ସେହି ଅନୁସାରେ ତାକୁ କାମ କରିବାକୁ ପଡିବ ।

ସେ ଶ୍ୱାସ ରୋଧ କରି ପାହୁଣ୍ଡେ ପାହୁଣ୍ଡେ କରି ମହାମାତ୍ୟ ଆଡ଼େ ଅଗ୍ରସର ହେଲା । ତା' ଦୃଷ୍ଟି ମହାମାତ୍ୟଙ୍କ ଡାହାଣ ହାତର ଅଙ୍ଗୁଳି ଉପରେ ପଡିଲା । ସେ ଅଙ୍ଗୁଳିରୁ ସୂର୍ଯ୍ୟକିରଣ ଭଳି ଜ୍ୟୋତି ବାହାରୁଥିଲା । ନିର୍ଭୟରେ ପିଙ୍ଗଳ ସେ ଅଙ୍ଗୁଳିରୁ ମୁଦ୍ରିକାଟି ବାହାର କରିନେଲା ।

ଆହୁରି ଦୁଇଟି ଚିଜ ସଂଗ୍ରହ କରିବାର ଥିଲା : ମହାମାତ୍ୟଙ୍କର ବଜ୍ରଖଚିତ ଛୁରିକା ଏବଂ ଗୋଟିଏ ଅଦ୍ଭୁତ ପେଣ୍ଡୁ—ଯାହାକ ପୃଥିବୀର ଆକୃତି ବିଶିଷ୍ଟ । ସେ ଛୁରିକାଟି ମହାମାତ୍ୟଙ୍କ ଅଣ୍ଟିରେ ଖୋସା ହୋଇଥିବାର ଲକ୍ଷ୍ୟ କଲା ଓ ତାକୁ ବାହାର କରିଆଣି ନିଜ ଅଣ୍ଟିରେ ଖୋସିଲା । ବାକି ରହିଲା ସେ ଗୋଲକ ର ବସ୍ତୁ ।

ପିଙ୍ଗଳ ଗୃହଆଡ଼େ ଦୃଷ୍ଟିପାତ କଲା । ଗୋଟିଏ କୋଣରୁ ସିଢ଼ିଟିଏ ତଳକୁ ଯାଇଥାଏ । ପିଙ୍ଗଳ ସେ ସିଢ଼ିରେ ଅବତରଣ କରି ଗୋଟିଏ ଭୂଗର୍ଭ ଗୃହରେ ପହଞ୍ଚି ସେ ଅଦ୍ଭୁତ ପେଣ୍ଡୁଟି ଦେଖିଲା । ସେ ପେଣ୍ଡୁ ଉପରେ ଯେ ଖାଲି ପୃଥିବୀର ଭିନ୍ନ ଭିନ୍ନ ଦେଶର ମାନଚିତ୍ର ଥିଲା ତାହା ନୁହେଁ, ଯେଉଁ ଅଞ୍ଚଳ ଉପରେ ଦୃଷ୍ଟିପାତ କରିବ, ତାହା ସ୍ଫିତ ହୋଇ ସେଠାରେ ଥିବା ଘରଦ୍ୱାର ମଣିଷ ମଧ୍ୟ ଦେଖାଯିବେ!

ପିଙ୍ଗଳ ଜହ୍ନ ଭଳି ଝଟକୁଥିବା ସେ ପେଣ୍ଡୁକୁ ହସ୍ତଗତ କଲା ।

ଏହାପରେ ଶେଷଥର ପାଇଁ ସେ ମହା-ତାନ୍ତ୍ରିକ ମହାମାୟୁଙ୍କର ସେ ସ୍ତବ୍ଧ ମୂର୍ତ୍ତିଆଡ଼େ ଥରେ ଦୃଷ୍ଟିପାତ କରି ବାହାରି ଆସିଲା ।

ହଠାତ୍ ପଛରୁ ଶୁଭିଲା, "ସାବାସ ପିଙ୍ଗଳ! ତୁମ ସାହସ ଓ ଧୈର୍ଯ୍ୟ ବାସ୍ତବିକ ଅଭିନନ୍ଦନୀୟ ।"

ପିଙ୍ଗଳର ମନେହେଲା ସତେ ଅବା ମହାମାୟୁ କଥା କହୁଛନ୍ତି । ସେ ବୁଲିପଡ଼ି ଅନାଇଲା । ନା, ମହାମାୟୁ ଯେମିତି ନିଶ୍ଚେତନ ଥିଲେ ସେମିତି ଅଛନ୍ତି ।

ପିଙ୍ଗଳ ଗୋଟାଏ ପରେ ଗୋଟାଏ ଦ୍ୱାର ଅତିକ୍ରମ କରି ନଦୀ ଗର୍ଭରୁ ବାହାରି ଆସିବା ମାତ୍ରେ ପଦ୍ମପାଦ ତାଳି ବଜାଇ ଅତ୍ୟନ୍ତ ଆବେଗଭରେ କହିଲେ, "ଧନ୍ୟ ପିଙ୍ଗଳ ଧନ୍ୟ! ଆମେ ଏଥର ଦିଗ୍‌ବିଜୟୀ ହୋଇ ପାରିବା । ପୃଥିବୀରେ ଏପରି କେହି ନାହିଁ ଯିଏ କି ଆମକୁ କୌଣସି କାମରେ ବାଧା ଦେଇ ପାରିବ ।"

ସେତିକିବେଳେ ପ୍ରଚଣ୍ଡ ଶବ୍ଦ ସହ ନଦୀ ଗର୍ଭରୁ ଜଳରାଶି ତାଳଗଛ ଉଚ୍ଚକୁ ଉଠି କୂଳ ଆଡ଼େ ଧାବିତ ହେବାର ଦେଖାଗଲା । ପଦ୍ମପାଦ ସେ ଦୃଶ୍ୟ ଦେଖି ଭୟରେ ଦୁଇଗୁର ପାଦ ପଛକୁ ହଟିଗଲେ ।

(କ୍ରମଶଃ)






# ଜୀବନର ମୋହ

ନିଶା ଗରଜୁଥାଏ । ଭୁହାକୁ ଭୁହା ବର୍ଷା ହେଉଥାଏ । ଘଡ଼ଘଡ଼ ସାଙ୍ଗକୁ ଶୁଭୁଥାଏ ଶ୍ୱାନଶ୍ୱାପଦଙ୍କ ରଡ । ତଥା ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୂର୍ତ୍ତିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ତାକୁ କାନ୍ଧରେ ପକାଇ ସେ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା, ତମେ ଏ ଭୟଙ୍କର ରାତିରେ ଯେ ଏଭଳି ଦୁଃସାହସିକ କାମରେ ହାତ ଦେଇଛ, ଏଥିରୁ ମନେ ହୁଏ ତମର ଜୀବନ ପ୍ରତି ମୋହ ନାହିଁ । ଏ ସମ୍ପର୍କରେ ତୁମକୁ ଗୋଟିଏ ଘଟଣା କହିବି ।

**ବେତାଳ କଥା**



ମନଦେଇ ଶୁଣ । ଶୁଣିଲେ ଶ୍ରମଭାର ଲାଘବ ବୋଧ ହେବ ।"

ବେତାଳ ଗପିଲା : ଦକ୍ଷିଣ ଦେଶର ଯୁବକ ରତ୍ନାକର କାଶୀ ନଗରୀରେ ବିଦ୍ୟାଲାଭ କରି ସ୍ୱଦେଶକୁ ଫେରୁଥାଏ । ବାଟ ଭୁଲି ସେ ବଣରେ ପ୍ରବେଶ କଲା । ବଣ ଭିତରେ କେତେ ବାଘଭାଲୁ । ରତ୍ନାକରର ଆତଙ୍କ କହିଲେ ନ ସରେ । ତେବେ ଭାଗ୍ୟକୁ ଜଣେ ସାଧୁ ତାକୁ ନିଜ କୁଡ଼ିଆକୁ ନେଇଗଲେ ।

ଅଳ୍ପ ସମୟ ଭିତରେ ରତ୍ନାକର ବୁଝି ପାରିଲା ଯେ ସାଧୁଙ୍କର ଆଲୌକିକ ଶକ୍ତି ରହିଛି । ରତ୍ନାକର ଭାବିଲା, ସାଧୁଙ୍କୁ ତୁଷ୍ଟ କରି କିଛି ଆଲୌକିକ ଶକ୍ତି ପାଇଗଲେ ଭଲ ହୁଅନ୍ତା । ସେ ସାଧୁଙ୍କର ସେବା କରିବାକୁ ଲାଗିଲା ।

ଦୁଇମାସ ପରେ ଦିନେ ସେ ସାଧୁଙ୍କୁ କହିଲା, "ମହାଭାଗ, ଆପଣ ଇଚ୍ଛା କରିବା ମାତ୍ରେ ଖାଦ୍ୟ ଦ୍ରବ୍ୟ ସୃଷ୍ଟି କରି ପାରୁଛନ୍ତି । ବାଘ ଭାଲୁ ଆପଣଙ୍କ ଛୁଇ ମାଡ଼ୁ ନାହାନ୍ତି । ଆପଣଙ୍କର ଏ ଶକ୍ତିର ରହସ୍ୟ ମୋତେ ବତାଇ ଦିଅନ୍ତୁ ।"

ସାଧୁ ଅଳ୍ପ ହସିଦେଲେ; କିନ୍ତୁ କିଛି କହିଲେ ନାହିଁ ।

ରତ୍ନାକର ଧୈର୍ଯ୍ୟ ନ ହରାଇ ସେଠାରେ ରହିଲା ଓ ପୁଣି ସାଧୁଙ୍କୁ ଏକା ନିବେଦନ କଲା । ସାଧୁ ପୁଣି ହସିଦେଇ ଚୁପ୍ ରହିଗଲେ ।

ଏଥର ରତ୍ନାକରର ଧୈର୍ଯ୍ୟ ଚ୍ୟୁତି ଘଟିଲା । ସାଧୁ ଧ୍ୟାନରେ ବସିଥିବା ବେଳେ ସେ ହଠାତ୍ ପାଟି କରି କ୍ରୋଧରେ ତାଙ୍କୁ ଗାଳିଗୁଲଜ କଲା ଓ ସେ ସାଧୁଙ୍କ ପ୍ରତି ଅକଥ୍ୟ ଭାଷା ପ୍ରୟୋଗ କଲା ।

ସାଧୁ ଆଖି ଖୋଲି ତା' ଆଡ଼େ ଅନାଇ ଦେବା ମାତ୍ରେ ସେ ଚୁପ୍ ହୋଇଗଲା, କିନ୍ତୁ ସେ ଦେଖିଲା, ତା' କଳେବର କ୍ରମେ ବଡ଼ ହେବାରେ ଲାଗିଛି । ପାଖରେ ଗୋଟିଏ ସରୋବର ଥିଲା । ସେଥିରେ ନିଜ ରୂପର ପ୍ରତିଫଳନ ଦେଖି କାବା ହୋଇଗଲା । ସେ ଗୋଟିଏ ରାକ୍ଷସ ବନି ଯାଇଥାଏ ।

ସେ ଫେରି ଆସି ସାଧୁଙ୍କ ପାଦତଳେ ଲୋଟିଯାଇ କହିଲା, "ଇଏ ହେଲା କ'ଣ ?"



"ବାପା, ମୁଁ ଧ୍ୟାନସ୍ଥ ଥିବା ବେଳେ ତୁ ରାକ୍ଷସ ଭଳି ବ୍ୟବହାର କଲୁ । ତେଣୁ ତୋ ଚେହେରା ରାକ୍ଷସ ଭଳି ହୋଇଗଲା । ମୁଁ କ'ଣ କରନ୍ତି ?" ସାଧୁ କହିଲେ ।

"ମହାଭାଗ! ମୋ ଦୁଷ୍କୃତ ଫଳରୁ ଏପରି ହେଲା । ମୋର କୌଣସି ମହତ୍ ଉଦ୍ଦେଶ୍ୟ ବା ନଥିଲା । ଭୁଛା ସ୍ୱାର୍ଥ ପାଇଁ ଏଠି ରହିଥିଲି । କିନ୍ତୁ ଏ ଦଣ୍ଡରୁ ନିସ୍କୃତି ପାଇବି କିପରି ?" ରତ୍ନାକର ବିକଳ ଭାବରେ ପଚାରିଲା ।

ସାଧୁ କହିଲେ, "ତୋ ଆକାର ସିନା ରାକ୍ଷସ ଭଳି ହୋଇଛି, କିନ୍ତୁ ତୋ ଶକ୍ତି ଓ ସ୍ୱଭାବରେ ତୁ ମଣିଷ ଭଳି ରହିବୁ । ଯେଉଁଦିନ ତୁ କୌଣସି ଭଲ କାମ କରିବୁ, ସେହିଦିନ ପୁଣି ନିଜରୂପ ଫେରି ପାଇବୁ ।"

ରତ୍ନାକର ଦୌଡ଼ି ଦୌଡ଼ି ସେ ବଣର ଗୋଟାଏ ପ୍ରାନ୍ତରେ ଯାଇ ପହଞ୍ଚିଲା ଓ ସେଇଠାରେ ରହିଲା । ତା' ସ୍ୱଭାବ ରାକ୍ଷସ ଭଳି ହୋଇ ନଥିବାରୁ ସେ ଖାଇବା ପିଇବାରେ ବଡ଼ ହଇରାଣ ହେଲା । ଥରେ ଏକାଧିକ୍ରମେ ସେ ତିନିଦିନ ଯାକ କିଛି ଖାଇବାକୁ ପାଇଲା ନାହିଁ । ବିରାଟ ଦେହ । ଶେଷରେ ତେଣୁ ସେ ଛଟପଟ ହୋଇ ଭାବିଲା, ବର୍ତ୍ତମାନ ମୋ ଗୁମ୍ଫାରୁ ବାହାରି ଯାଇ ଯେଉଁ ପ୍ରାଣୀକୁ ଦେଖିବି, ତାକୁ ଖାଇ ପକାଇବି ।"

ସେ ବାହାରି ଆସିବା ବେଳକୁ ସେ ବଣ ରାସ୍ତାରେ ବୀରସେନ ନାମକ ଜଣେ ସାହସୀ ଯୁବକ ଯାଉଥିଲେ । ରତ୍ନାକର ତାଙ୍କ ଆଡ଼େ ଝପଟି ଆସିବା ମାତ୍ରେ ବୀରସେନ ତରବାରି ବାହାର କରି ତାକୁ ଆକ୍ରମଣ କରିବାକୁ ପ୍ରସ୍ତୁତ ହୋଇଗଲେ ।

"ତମର ସାହସ ତ ବହୁତ ଦେଖୁଛି ! ରାକ୍ଷସକୁ ଦେଖି ବି ଭୟ କରୁନାହିଁ !" ରତ୍ନାକର କହିଲା ।

"ଭୟ କରିବାର ହୋଇଥିଲେ ମୁଁ ଏ ବଣରେ ପ୍ରବେଶ କରନ୍ତି କାହିଁକି ? ଏହିଭଳି କୌଣସି ଦୁଃସାହସିକ ଅଭିଜ୍ଞତା ପାଇଁ ତ ଏଠାକୁ ଆସିଛି !" ବୀରସେନ କହିଲେ ।

"ଧୁତ୍ତେରେ !" କହିଲା ରାକ୍ଷସ ରତ୍ନାକର ।

"କ'ଣ ହେଲା ?" ବୀରସେନ ପଚାରିଲେ ।



"ତମଭଳି ସାହସୀ ଯୁବକଙ୍କୁ ମୁଁ ଆକ୍ରମଣ କରିବି ନାହିଁ। କଲେ ବି ହୁଏତ ବଳରେ ପାରିବି ନାହିଁ। କିନ୍ତୁ ମୋର କାହାକୁ ହେଲେ ଖାଇବା ଦରକାର। ଗୋଟାଏ ଭୀରୁ ଦୁର୍ବଳଆ ଲୋକ କାହିଁ ମିଳିବ?"

"ତମେ ରାକ୍ଷସ। ବଳରେ ମୋତେ ପାରିବ ନାହିଁ ବୋଲି କାହିଁକି ଭାବୁଛ?"

ରତ୍ନାକର ଏ ପ୍ରଶ୍ନ ଶୁଣି ହସିଲା ଓ ତା' ଇତିହାସ କହିସାରି ପଚାରିଲା, "ଏଥର କହିଲ, ଭୀରୁଟାଏ କାହିଁ ପାଇବି!"

ବୀରସେନ କହିଲେ, "ଏ ଦୁନିଆରେ ଭୀରୁଙ୍କର ଅଭାବ ନାହିଁ। ତେବେ ଏ ବଣରେ ବସି ରହିଲେ ଯେଉଁମାନଙ୍କୁ ଭେଟିବ, ସେମାନେ ଭୀରୁ ହୋଇ ନଥିବେ। ଭୀରୁମାନେ ଏ ମୂଲକକୁ ଆସିବା କଥା ନୁହେଁ।"

ଦୁହେଁ ଦୁହିଁଙ୍କଠାରୁ ବିଦାୟ ନେଲେ। ରତ୍ନାକର ଗୋଟାଏ ଗାଁରେ ଯାଇ ପହଞ୍ଚିଲା। ସେତେବେଳକୁ ସଞ୍ଜ ହୋଇ ଆସୁଥାଏ। ସେ ହରିହର ନାମକ ଜଣେ କ୍ଷୀଣକାୟ ଲୋକକୁ ଦେଖି ତା' ଆଡ଼େ ଲମ୍ଫ ଦେଲା। କିନ୍ତୁ ସେ ଆଶ୍ଚର୍ଯ୍ୟ ହୋଇ ଦେଖିଲା, ସେ ଲୋକଟି ମୁହଁରେ ଛଲେ ବି ଭୟର ଚିହ୍ନ ନାହିଁ।

"ତମେ ମୋତେ ଦେଖି ଭୟ କରୁନାହିଁ?" ରାକ୍ଷସ ରତ୍ନାକରକୁ ପଚାରିଲା।

"ନା ତ; ମୁଁ ଭାବୁଥିଲି ଏହିକ୍ଷଣି ବଣ ଭିତରୁ ଗୋଟାଏ ବାଘ ବା ଦାନବ ଆସି ମୋତେ ନେଇ ଯାଆନ୍ତା କି! ତାହାହେଲେ ଦାରିଦ୍ର୍ୟର ତାଡ଼ନାରୁ ରକ୍ଷା ପାଇଯା'ନ୍ତି।" ହରିହର କହିଲା।

"ଧୁତ୍ତେରି!"

"କ'ଣ ହେଲା?" ଆଶ୍ଚର୍ଯ୍ୟ ହୋଇ ହରିହର ପଚାରିଲା।

"କ'ଣ ଆଉ ହେବ! ମୋତେ ଅନାହାରରେ ମରିବାକୁ ପଡ଼ିବ ଦେଖୁଛି। ମୁଁ ସାହସୀ ଲୋକଙ୍କୁ ଖାଇ ପାରିବି ନାହିଁ। ଆଚ୍ଛା, କହିଲ, ଏ ଗାଁରେ ଭୀରୁ କେହି ଅଛି?"

"ନିଶ୍ଚୟ! ଦୁଲାଲ ଚୌଧୁରୀ ତ ମୃତ୍ୟୁ ନାମ ପଡ଼ିଲେ ଭୟରେ କମ୍ପୁଥାଏ।" ହରିହର କହିଲା।



ରତ୍ନାକର ଯାଇ ଦୁଲାଲ ସେନ୍ ଧୁସିର କୋଠରୀ ଭିତରେ ପଶିଲା ।

ଦୁଲାଲ ସେନ୍ ଧୁସି ରାକ୍ଷସକୁ ଦେଖି କହିଲେ, "ଆସ, ବନ୍ଧୁ, ଆସ । ଜୀବନ ଦୁର୍ବିସହ ହେଲଣି । ଯେତେ ଔଷଧ ଖାଇଲେ ବି ରୋଗ ଭଲ ହେଉନାହିଁ । ଏଇନେ ଭାବୁଥିଲି, ମୃତ୍ୟୁ ଆସି ମୋ ଯନ୍ତ୍ରଣାର ଅବସାନ କରନ୍ତା କି!"

"ଧୁତ୍ତେରେ! ତମ ଗାଁରେ କ'ଣ ଜୀବନ ପ୍ରତି ମୋହ ଥିବା ଲୋକ ଜମାରୁ ନାହାନ୍ତି ?" ରାକ୍ଷସ ରତ୍ନାକର ବିରକ୍ତ ହୋଇ ପଚାରିଲା ।

"ନିଶ୍ଚୟ ଅଛନ୍ତି । ଆମ ବୈଦ୍ୟ ମହେନ୍ଦ୍ର ମିଶ୍ର ମୋର ରୋଗ ଭଲ କରୁନାହିଁ କାହିଁକି ? କାରଣ ମୁଁ ବେଶିଦିନ ଭୋଗିଲେ ସେ ବେଶି ଉପାର୍ଜନ କରିବ ।" ଦୁଲାଲ ସେନ୍ ଧୁସି କହିଲେ ।

ସେତେବେଳକୁ ରାକ୍ଷସ ରତ୍ନାକରକୁ ଭୀଷଣ ଭୋକ ଲାଗିଲାଣି । ସେ ଯାଇ ସିଧାସଳଖ ପହଞ୍ଚିଲା ମହେନ୍ଦ୍ର ମିଶ୍ର ଘରେ । କିନ୍ତୁ ମହେନ୍ଦ୍ର ମିଶ୍ରର ଅବସ୍ଥା ଦେଖି ସେ କାବା ହୋଇଗଲା । ହଠାତ୍ ତାଙ୍କର ସୁନା ଟଙ୍କାମାନ ଚୋରି ହୋଇ ଯାଇଛି । ରାକ୍ଷସକୁ ଦେଖି ସେ କହିଲେ, "ଯଦି ମୋ ସାରା ଜୀବନର ପରିଶ୍ରମ ବୃଥାଗଲା, ତେବେ ଏ ଜୀବନ ରଖି ଲାଭ କ'ଣ ? ମୋତେ ଶୀଘ୍ର ଖାଇ ପକାଅ ।"

ରାକ୍ଷସ କହିଲା, "ଜୀବନ ପ୍ରତି ଯା'ର ମୋହ ନାହିଁ, ତାକୁ ଖାଇବାକୁ ମୋତେ ଅଶାନ୍ତି ଲାଗିବ । ତୁମ ଗାଁରେ କ'ଣ ଏପରି କେହି ଲୋକ ନାହିଁ ଯିଏ ଜୀବନ ପ୍ରତି ଅତ୍ୟନ୍ତ ମୋହାସକ୍ତ ?"

"ଅଛି । ସିଏ କୃପଣ ମହାଜନ ଜୟ ପ୍ରଧାନ । ଅତ୍ୟନ୍ତ ମୋହ ଯୋଗୁଁ ସେ ସେଭଳି ହୋଇଛି ।"

ରାକ୍ଷସ ଯାଇ ଜୟ ପ୍ରଧାନ ଆଗରେ ଠିଆ ହେଲା । ଜୟ ପ୍ରଧାନ ଚମକି ଉଠିଲା । ରାକ୍ଷସ ବୁଝିଲା, ଏଥର ସେ ଉପଯୁକ୍ତ ଖାଦ୍ୟ ପାଇଛି ।

"ମୃତ୍ୟୁ ପାଇଁ ପ୍ରସ୍ତୁତ ହୁଅ । ଇଷ୍ଟ ଦେବତାଙ୍କୁ ଡାକିନିଅ ।" ରାକ୍ଷସ କହିଲା ।

"ରାକ୍ଷସରାଜ! ଗୋଟିଏ ଦିନ ଅପେକ୍ଷା କର । ଗୋଟିଏ ଲୋକ ମୋଠୁଁ ଦଶହଜାର ଟଙ୍କା କରଜ ନେଇଥିଲା । ସୁଧ ସହ କାଲି



ଫେରାଇବ । ମୁଁ ଆଜି ମଲେ ସେ ଟଙ୍କା ଆଉ ସେ ଦେବ ନାହିଁ ।" ଜମ୍ବୁ ପ୍ରଧାନ କାକୁସ୍ଥ ଭାବରେ କହିଲା ।

"ତମେ ପାଗଳ ନା କ'ଣ? ତମକୁ ମୁଁ ଖାଇଲେ ଟଙ୍କା ଆଦାୟ କରି ଲାଭ କ'ଣ ହେବ?" ରାକ୍ଷସ ପଚାରିଲା ।

ଏ ପ୍ରଶ୍ନର ଉତ୍ତରରେ ଜମ୍ବୁ ପ୍ରଧାନ କିଛି କହି ପାରିଲା ନାହିଁ ।

"ଆଚ୍ଛା ହେଉ, ତୁମକୁ ଛାଡ଼ି ଦେବି । କିନ୍ତୁ ତୁମେ ଗୋଟାଏ ଦାତବ୍ୟ ଚିକିତ୍ସାଳୟ ଓ ଗୋଟିଏ ମନ୍ଦିର ତିଆରି କର ।" ରାକ୍ଷସ ତାକୁ କିଛି ଭଲ କାମ କରିବାକୁ ଉପଦେଶ ଦେଲା ।

"ନା, ନା, ନା, ନା । ମୁଁ ସେଥିରେ ଟଙ୍କା ଖର୍ଚ୍ଚ କରିବି ନାହିଁ ।" ମହାଜନ ମୁଣ୍ଡ ହଲାଇ ଜଣାଇଦେଲା ।

"ତେବେ ତୁମକୁ ଖାଇବି ।" ରାକ୍ଷସ ଧମକ ଦେଲା । "ଯଦି ଖାଇବ ତ ଖାଅ । କିନ୍ତୁ ଟଙ୍କା ମୁଁ ଖର୍ଚ୍ଚ କରିବି ନାହିଁ ।"

"ତୁମର ଜୀବନ ପ୍ରତି ମୋହ ନାହିଁ?" ରାକ୍ଷସ ପଚାରିଲା ।

"ସେକଥା ମୁଁ ଜାଣେ ନା । କିନ୍ତୁ ମୁଁ ଟଙ୍କା ଖର୍ଚ୍ଚ କରିବି ନାହିଁ ।" ଟେକଟୋକ୍ ଜମ୍ବୁ ପ୍ରଧାନ ଜଣାଇଦେଲା ।

"ଧୂତ୍ତେରି!" ରାକ୍ଷସ ତାକୁ ଛାଡି ଚାଲିଗଲା । ସେ ଭାବିଲା ଏ ଗାଁରେ ଜୀବନ ପ୍ରତି ମୋହ ଥିବା ଲୋକ ମିଳିବେ ନାହିଁ ।

ଗାଁ ବାହାରେ ସେ ଦେଖିଲା, ହରିହର ତାକୁ ଦେଖି ଦୌଡି ପଳାଉଛି । ରାକ୍ଷସ ଆଶ୍ଚର୍ଯ୍ୟ ହୋଇ ତାକୁ ଧରି ପକାଇଲା । ହରିହର ନେହୁରା ହୋଇ କହିଲା, "ରାକ୍ଷସରାଜ, ମୋତେ ଛାଡ଼ି ଦିଅ । କଥା କ'ଣ କି, ଦୁଲାଲ ଶ୍ରେଷ୍ଠୀ ମୋତେ ତାଙ୍କ ଝିଅ ବାହା ଦେବେ । ଫଳରେ ମୁଁ ତାଙ୍କର ସବୁ ସମ୍ପତ୍ତି ପାଇବି ।"

ସତ ମିଛ ବୁଝିବା ପାଇଁ ରାକ୍ଷସ ଦୁଲାଲ ଶ୍ରେଷ୍ଠୀ ଘରେ ପହଞ୍ଚିଲା । ଦୁଲାଲ ଶ୍ରେଷ୍ଠୀ କହିଲା, "ଭାଇ ରାକ୍ଷସ, ଗତ କାଲି ରାତିରେ ବୈଦ୍ୟ ଭଲ ଔଷଧ ଦେଲେ । ମୁଁ ଆଜି ବହୁତ ସୁସ୍ଥ । ମୋତେ ବଞ୍ଚିବାକୁ ଦିଅ ।"

ରାକ୍ଷସ ଯାଇ ବୈଦ୍ୟ ଘରେ ପହଞ୍ଚି ବୁଝିଲା, ରାଜାଙ୍କ ସିପାହୀମାନେ ଚୋର ଧରିବା ସଙ୍ଗେ ସଙ୍ଗେ ତା'ର ସମ୍ପଦାୟ ସୁନାଚେକା ଉଦ୍ଧାର କରି ପାରିଛନ୍ତି । ସେ ଖୁସି । ତା'ର ବି ଆଉ ମରିବାର ବାସନା ନାହିଁ ।

ରାକ୍ଷସ ଭୀଷଣ କ୍ଷୁଧାରେ ମୂର୍ଚ୍ଛା ହୋଇ ତଳେ ପଡ଼ିଗଲା । ବୈଦ୍ୟଙ୍କ ହେପାଜତରେ ତା' ଚେତା ଫେରିବା ବେଳକୁ ସେ ଆଉ ରାକ୍ଷସ ହୋଇ ନାହିଁ, ମଣିଷ ରତ୍ନାକରର ରୂପ ଫେରି ପାଇଲାଣି । ବୈଦ୍ୟଙ୍କ ବିସ୍ମୟ ଦେଖି ରତ୍ନାକର ତାଙ୍କୁ ସବୁ କଥା କହିଲା । ବୈଦ୍ୟଙ୍କ ଘରେ ଦୁଇଦିନ ରହି ଖାଇପିଇ ସୁସ୍ଥ ହୋଇ ନିଜ ଘରକୁ ଫେରିଗଲା ।

ବେତାଳ ଟିକିଏ ଚୁପ୍ ରହି କଣ୍ଠସ୍ୱର ତୀବ୍ର କରି ପଚାରିଲା, "ରାଜା! ରାକ୍ଷସ ଜୀବନ ପ୍ରତି ମୋହଥିବା ଭୀରୁକୁ ଖାଇବା କଥା । ସେଭଳି ଭୀରୁତାର ଲକ୍ଷଣ ଦ୍ୱିତୀୟ ସାକ୍ଷାତରେ ତିନିଙ୍କ ଭିତରେ ସେ ଦେଖିଲେ ମଧ୍ୟ ସେମାନଙ୍କୁ ସେ ନ ଖାଇଲା କାହିଁକି? ସାଧୁ କହିଥିଲେ କୌଣସି ଭଲ କାମ କଲେ ସେ ମଣିଷ ରୂପ ଫେରି ପାଇବ । ସେପରି କିଛି ନକରି ବି ସେ ମଣିଷ ବନିଗଲା କିପରି? ରାଜା! ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଜ୍ଞାନ ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ କହିଲେ, "ରତ୍ନାକର ସିନା ଆକାରରେ ରାକ୍ଷସ ବନିଯାଇଥିଲା, କିନ୍ତୁ ତା' ସ୍ୱଭାବରେ କ୍ରୂରତା ନଥିଲା । ତେଣୁ ସେ କାହାକୁ ଖାଇପାରିଲା ନାହିଁ । ପ୍ରବଳ କ୍ଷୁଧା ସତ୍ତ୍ୱେ ସେ ଯେ ପ୍ରବୃତ୍ତି ସମ୍ବରଣ କରି ରହି ପାରିଲା, ଏହାହିଁ ହେଲା ତା'ର ଭଲ କାମ । ଫଳରେ ସେ ମଣିଷ ରୂପ ଫେରି ପାଇଲା ।"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ଯାଇ ପୁନରାୟ ବୃକ୍ଷ ଡାଳରେ ଝୁଲି ପଡ଼ିଲା । (କଳ୍ପିତ)



# କଳାଜ୍ଞାନ

ପର୍ବତ ପୁରର ସାମନ୍ତ ରାଜାଙ୍କର ଦେବାନଙ୍କର ଧାରଣା ଥିଲା, ରାଜା କଳା ବା ଶିଳ୍ପର କିଛି ବୁଝନ୍ତି ନାହିଁ ।

ଦିନେ ରାଜା ଦେବାନଙ୍କୁ କହିଲେ, " ଜଣେ ଭଲ ଚିତ୍ରକର ଡକାଇଲ !"

ଦେବାନ ଚିତ୍ରକରଙ୍କୁ ଗୋପନରେ କହିଲେ, "ଶୁଣ ବାବୁ, ଆମ ରାଜା କଳାର କ ଅକ୍ଷର ବୁଝନ୍ତି ନାହିଁ । ତେଣୁ ସେ ତମକୁ କ'ଣ କହିବେ ଜଣା ନାହିଁ । ମୋତେ ଭୁଲ ବୁଝିବ ନାହିଁ ।"

ସନ୍ଧ୍ୟାବେଳେ ଚିତ୍ରକର ଦେବାନ୍‌ଙ୍କୁ କହିଲେ, "ମହାଶୟ, ଆପଣ ଆପଣଙ୍କ ରାଜାଙ୍କ ଚିତ୍ରର ଚ ଅକ୍ଷର ବୁଝନ୍ତି ନାହିଁ । ରାଜାଙ୍କ କଳା ଜ୍ଞାନ ଅସାଧାରଣ । ସେ ତାଙ୍କ ନଅରରେ ଥିବା ପୁରୁଣା ଅମୂଲ୍ୟ ଚିତ୍ରମାନଙ୍କୁ ପରିଷ୍କାର କରିବାକୁ ଚାହୁଁଥିଲେ । କିନ୍ତୁ କୌଣସି ସାଧାରଣ ଲୋକ ଦ୍ୱାରା ତାହା ନକରି ସେ ଜଣେ ଚିତ୍ରକର ଦ୍ୱାରା ତାହା କରାଇଥିବାର କାରଣ ସାଧାରଣ ଲୋକଟିଏ ସେସବୁର ମୂଲ୍ୟ ନ ବୁଝି ହୁଏତ ସେସବୁ ଘଷାମଜା କରି ନଷ୍ଟ କରି ଦିଅନ୍ତା । ରାଜା ପୁଣି ନିଜେ ମୋ ସହ କାନ୍ଧ ମିଳାଇ ସେ କାମ କରୁଥାନ୍ତି ଓ ପ୍ରତିଟି ଚିତ୍ରର ବିଶେଷତ୍ୱ ଗପୁଥାନ୍ତି ।"

ଦେବାନ୍ ଆଶ୍ଚର୍ଯ୍ୟ ଓ ଆନନ୍ଦିତ ହେଲେ ।





# ହାତର କରାମତି

ଧରମ ଦାସ ସହରରେ ଭଡ଼ା ଘରେ ରହୁଥାଏ । ତିରିଶ ବର୍ଷ ତଳେ ଗାଁ ଛାଡ଼ି ସହରକୁ ଚାକିରି କରିବା ସକାଶେ ଆସିବା ବେଳେ ସେ କେତେ ସ୍ୱପ୍ନ ଦେଖିଥାଏ । ଦିନେ ସେ ବହୁତ ରୋଜଗାର କରିବ, କୋଠା କରିବ, ଇତ୍ୟାଦି । କିନ୍ତୁ ସେସବୁ ସ୍ୱପ୍ନ ସ୍ୱପ୍ନରେହିଁ ରହିଗଲା । ଏଣେ ପରିବାର ବଢ଼ି ବଢ଼ି ଚାଲିଥାଏ । ତେଣେ ସେ ଚାକିରିରେ ଯୋଗ ଦେବା ବେଳେ ଦରମା ଯେତିକି ଥିଲା, ତାହାଠୁଁ ବିଶେଷ ବେଶି ଆଉ ବଢ଼ି ନଥାଏ । ଦରଦାମ କିନ୍ତୁ ହୁ ହୁ ବଢ଼ି ଚାଲିଥାଏ ।

ଧରମ ଦାସ ଯେତିକି ପାଉଥାଏ, ସେଥିରେ କୌଣସି ମତେ ପରିବାର ଭରଣ ପୋଷଣ ହୋଇଯାଉଥାଏ । କିଛି ସାଇତି ରଖିବା ସମ୍ଭବପର ହେଉ ନଥିଲା । ଘରେ ଦୁଇଟି ବଡ଼ ବଡ଼ ଝିଅ । ସେମାନଙ୍କ ବାହାଘର ବିଷୟ ଭାବିଲେ ଧରମ ଦାସର ମୁଣ୍ଡ ବୁଲେଇ ଦେଉଥିଲା । ସେ ଭଗବାନଙ୍କୁ ଭରସା କରି ସବୁ ଭୁଲି ଯାଉଥିଲା ।

ହଠାତ୍ ଗାଁରୁ ଖବର ଆସି ପହଞ୍ଚିଲା, ତା' ବୁଢ଼ା ବାପା ମା ଉଭୟେ ବେମାର ପଡ଼ିଛନ୍ତି । ସେମାନଙ୍କୁ ସହରକୁ ନେଇ ଆସି ସେମାନଙ୍କ ଚିକିତ୍ସାର ବ୍ୟବସ୍ଥା କରିବା ଆବଶ୍ୟକ । କିନ୍ତୁ ସେପାଇଁ ବହୁତ ଟଙ୍କା ଦରକାର । କିପରି ସେ ବ୍ୟବସ୍ଥା ସମ୍ଭବପର ହେବ ?

ଘର ଗଛପଟେ ଧରମ ଦାସ ଦୁଃଖ କରି ତା' ସ୍ତ୍ରୀକୁ କହିଲା, "ମୁଁ ଏଡ଼େ ହତଭାଗା, ଏତେ ବର୍ଷ ଚାକିରି କରି ମଧ୍ୟ ଆଜି ବାପାମା'ଙ୍କ ଶେଷ ଅବସ୍ଥାରେ ସେମାନଙ୍କର କୌଣସି ଉପକାର କରି ପାରୁନାହିଁ !"

"କ'ଣ ଆଉ କରନ୍ତ? ଆମେ ତ ଜାଣିଶୁଣି ସେମାନଙ୍କୁ ଅନାଦର କରୁନାହୁଁ !



ଦଇବ ଆମକୁ ଗରିବ କରି ରଖିଛି । ଆମେ ଇଚ୍ଛା କଲେ କ'ଣ ଅବସ୍ଥା ବଦଳାଇ ଦେଇ ପାରିବା ?" ତା' ସ୍ତ୍ରୀ କହିଲା ।

"ମୋର ଯଦି ଘର ବା ଜମିଜମା କିଛି ଥା'ନ୍ତା, ତେବେ ତାକୁ ବନ୍ଧକ କରିଦେଇ ମଧ୍ୟ ବାପା ମା'ଙ୍କୁ ଏଠାରେ ରଖି ସେବା ଶୁଶ୍ରୂଷା କରନ୍ତି । କିନ୍ତୁ ସେଭଳି କିଛି ମୋର ନାହିଁ । ସେମାନେ ଭାବୁଥିବେ, ପୁଅ ସହରରେ ରହି ଆମକୁ ଭୁଲିଗଲା !" ଧରମ ଦାସ ଦୀର୍ଘନିଃଶ୍ୱାସ ଛାଡ଼ି କହିଲା । ଦୁହେଁ ଏହିପରି କଥାବାର୍ତ୍ତା କରି ଘର ଭିତରକୁ ଚାଲିଗଲେ । ସେମାନଙ୍କ କଥାବାର୍ତ୍ତା ଶୁଣିଲେ ଗଛରେ ରହୁଥିବା ଜଣେ ଗନ୍ଧର୍ବ ଏବଂ ଜଣେ ଗନ୍ଧର୍ବୀ ।

ଗନ୍ଧର୍ବ କହିଲେ, "ବାସ୍ତବିକ, ଏମାନଙ୍କୁ ଆମେ ସାହାଯ୍ୟ କରିବା କଥା । ଏମାନଙ୍କ ଉଦ୍ଦେଶ୍ୟ ବଡ଼ ମହତ୍ । ତା' ଛଡ଼ା ଏ ଘରେ ସ୍ୱାମୀ ସ୍ତ୍ରୀ, ପିଲାପିଲି ସମସ୍ତଙ୍କ ଭିତରେ ବହୁତ ସଦ୍‌ଭାବ ଓ ବୁଝାମଣା ରହିଛି ।"

ଗନ୍ଧର୍ବୀ କହିଲେ, "ମୁଁ ବି ସେଇଆ ଭାବୁଛି । ଆଜି ରାତିରେ କିଛି ଧନ ସମ୍ପଦ ଏପରି ସ୍ଥାନରେ ଥୋଇଦେବା, ସକାଳେ ସହଜରେ ତାହା ସେମାନଙ୍କ ଆଖିରେ ପଡ଼ିବ ।"

ଏହାପରେ ଗନ୍ଧର୍ବ ଗନ୍ଧର୍ବୀ ଗୋଟାଏ ଥଳିରେ କିଛି ସୁନା ମୁଣ୍ଡା ଭର୍ତ୍ତି କରି ତାହା କୂଅ ପାଖରେ ଥୋଇଦେଲେ ।

ଭୋର ବେଳକୁ ଧରମ ଦାସର ସ୍ତ୍ରୀ କୂଅକୁ ପାଣି କାଢ଼ିବାକୁ ଆସି ସେ ଥଳି ଦେଖି କୌତୁହଳ ବଶତଃ ତାହା ଖୋଲିଲା । ଭିତରେ ସୁନାମୁଣ୍ଡାମାନ ଦେଖି ସେ ବିସ୍ମୟ ଓ ଆନନ୍ଦରେ କିଛି ସମୟ ପର୍ଯ୍ୟନ୍ତ ସ୍ତବ୍ଧ ହୋଇ ରହିଲା । ତା'ପରେ ଦୌଡ଼ିଯାଇ ତା' ସ୍ୱାମୀକୁ ଡାକିନେଇ ଆସିଲା ।

ଧରମ ଦାସର ଆନନ୍ଦ ବି କହିଲେ ନସରେ । ଥଳିକୁ ଘର ଭିତରକୁ ନିଆଗଲା । ଦୁହେଁ ତାକୁ ଗୋପନରେ ରଖିବାକୁ ଇଚ୍ଛା କଲେ ବି ସେମାନଙ୍କ ଆନନ୍ଦ ଏତେ ପ୍ରବଳ ହେଲା ଯେ ସେମାନେ ପିଲାମାନଙ୍କୁ ସେ ଆବିଷ୍କାର କଥା ନ କହି ରହି ପାରିଲେ ନାହିଁ ।

ଦୁଇ ପୁଅ ଖୁସିରେ ନାଚିଗଲେ ।

"ବର୍ତ୍ତମାନ ଆମର ପ୍ରଥମ କାମ କ'ଣ ହେବ ସେକଥା ଠିକ୍ କରିବା ଉଚିତ । ଗୋଟାଏ ବ୍ୟବସାୟ କରିବା । ତା'ହେଲେ ଟଙ୍କାପଇସା ବଢ଼ିବ ।" ବଡ଼ ପୁଅ କହିଲା ।

"ବ୍ୟବସାୟରେ ତ କ୍ଷତି ବି ହୋଇପାରେ ! ନା, ଆମେ ସମସ୍ତେ ବର୍ତ୍ତମାନ ଭଲ ଭାବରେ ଖିଆପିଆ କରିବା ଓ ଆମେ ଦୁହେଁ କାଶୀ ଯାଇ ବିଦ୍ୟାର୍ଜନ କରିବା । ଟଙ୍କା ଆଜି ଅଛି କାଲି ନଥିବ । କିନ୍ତୁ ବିଦ୍ୟା ଥରେ ଅର୍ଜନ ହେଲେ ସବୁଦିନେ ଆମର ହୋଇ ରହିଥିବ ।" ସାନ ପୁଅ କହିଲା ।

"ତମେ ପିଲାଗୁଡ଼ା କ'ଣ ଜାଣିଛ ? ମୁଁ ଜୀବନ ସାରା ଖାଲି ଅଳଙ୍କାର ଦେଖୁଛି— ଅନ୍ୟ ସ୍ତ୍ରୀ ଲୋକମାନଙ୍କ ଦେହରେ । କିନ୍ତୁ କେବେ ଗୋଟାଏ ହେଲେ ଭଲ ଅଳଙ୍କାର ପିନ୍ଧିବାର ସୁଯୋଗ ପାଇ ନାହିଁ । ମୁଁ ଯେ ଅଳଙ୍କାର ପିନ୍ଧିବା ପାଇଁ ଲୋଭ କରୁଛି, ତାହା ନୁହେଁ । କଥା କ'ଣ କି, ସୁନାକୁ ଅଳଙ୍କାର ରୂପେ ପିନ୍ଧିଲେ ସୁନ୍ଦର ବି ଦିଶିବ, ସୁନା ବି ଖର୍ଚ୍ଚ ହୋଇ ନଯାଇ ରହିବ ।" ଧରମ ଦାସର ସ୍ତ୍ରୀ କହିଲା ।

ଧରମ ଦାସ କହିଲା, "ତମମାନଙ୍କର ବୁଦ୍ଧି ବିଶେଷ ନାହିଁ ଦେଖୁଛି । ପ୍ରଥମେ ଗୋଟାଏ ଭଲ ଘର କିଣି ପକାଇବା ଦରକାର । କିଛି ଜମିବାଡ଼ ମଧ୍ୟ । ଏତିକି ମିଳି ସାରିଲେ ଚେଷ୍ଟିକି ବେପାର କର ବା ଯାହା କର !"



ଧରମ ଦାସର କଥା ପୁଅମାନଙ୍କର ବା ସ୍ତ୍ରୀର ପସନ୍ଦ ହେଲା ନାହିଁ । ସେମାନେ ନିଜ ନିଜ ମତରେ ଅଟଳ ରହିଲେ । କ୍ରମେ ସେମାନଙ୍କ ମତଭେଦ ଝଗଡ଼ାରେ ପରିଣତ ହେଲା । ଝିଅ ଦୁଇଜଣ ଚୁପଚାପ ଠିଆ ହୋଇଥାନ୍ତି ସିନା, କିନ୍ତୁ ସେମାନଙ୍କ ବାହାଘର କଥା କାହାରି ମନକୁ ଆସୁନାହିଁ ଦେଖି ସେମାନେ ମନେ ମନେ ବଡ଼ ଦୁଃଖ ଅନୁଭବ କରୁଥାନ୍ତି ।

ଧରମ ଦାସ ଥଳି ଫିଟାଇ କହିଲା, "ଦେଖେଁ କେତେ ସୁନା ଅଛି !"

କିନ୍ତୁ ସୁନା କାହିଁ ? ତାହା ବଦଳରେ ଥଳିରେ ମାଟିଗୋଡ଼ ଭର୍ତ୍ତି ହୋଇଥିଲା । ଗନ୍ଧର୍ବ ଓ ଗନ୍ଧର୍ବୀ ଅଦୃଶ୍ୟ ଭାବରେ ସେମାନଙ୍କ ଝଗଡ଼ା ଲକ୍ଷ୍ୟ କରୁଥିଲେ ଓ ଭାବୁଥିଲେ, "ହାୟ୍, ଏତେଦିନ ଯେଉଁ ପରିବାର ଭିତରେ ଏତେ ସଦ୍‌ଭାବ ଥିଲା, ସାମାନ୍ୟ ଧନ ସେ ସଦ୍‌ଭାବକୁ ଭାଙ୍ଗି ଦେଲା !" ଏହା ଭାବି ସେମାନେ ସୁନାକୁ ବଦଳାଇ ମାଟିଗୋଡ଼ କରିଦେଇଥିଲେ ।

ଧରମ ଦାସ ମୁଣ୍ଡରେ ହାତ ଦେଇ ବସିଲା । ତା' ସ୍ତ୍ରୀ କାନ୍ଦିଲା । ପୁଅ ଦୁଇଜଣ ମୁଣ୍ଡ ତଳକୁ କରି ଠିଆ ହୋଇଥାନ୍ତି ।

ବଡ଼ ଝିଅ କହିଲା, "ବାପା, ଆମେମାନେ ଏତେ ଅବିବେକୀ, ଜେଜେବାପା ଜେଜେମା'ଙ୍କ ଅସୁସ୍ଥତା କଥା ପୁରାପୁରି ଭୁଲିଗଲୁଁ ! ପ୍ରଥମେ ସିନା ସେମାନଙ୍କ ଚିକିତ୍ସା କଥା ଚିନ୍ତା କରିବା ଉଚିତ ଥିଲା !"

"ଠିକ୍ ମା, ଠିକ୍ କଥା କହିଲୁ !" ଧରମ ଦାସ କହିଲା । ସେ ଏତକ କହିବା ମାତ୍ରେ ଥଳି ଭିତରେ ଥିବା ବସ୍ତୁ ପୁଣି ଝଟକି ଉଠିଲା । ଅର୍ଥାତ୍ ସୁନା ହୋଇଗଲା ।

ଧରମ ଦାସ ଓ ଅନ୍ୟ ସମସ୍ତଙ୍କ ମୁହଁରେ ହସ ଫୁଟିଲା । ଧରମ ଦାସ ସେହିଦିନ ଛୁଟି ନେଇ ବାପାମା'ଙ୍କୁ ଆଣିବା ସକାଶେ ଗାଡ଼ି ଧରି ଗାଁ ଅଭିମୁଖେ ଚାଲିଲା ।






# ଅପୂର୍ବ ସଙ୍କଟ

କାଶୀ ନଗରୀର ଗୋଟିଏ ପ୍ରାନ୍ତରେ ରହୁଥିଲେ ଜଣେ ବ୍ରାହ୍ମଣ । ସେ ଦୂର ଦୂରାନ୍ତର ଯାଇ ଶାସ୍ତ୍ର ପ୍ରବଚନ ଶୁଣାଇ ଯତ୍‌କିଞ୍ଚିତ୍ ଆୟ କରୁଥିଲେ । ସେଥିରେ ତାଙ୍କ ଛୋଟ ପରିବାର ଚଳୁଥିଲା ।

ଦିନେ ସେ ବଣ ଭିତର ଦେଇ ଘରକୁ ଫେରୁଛନ୍ତି, ହଠାତ୍ ଗୋଟାଏ ଦୈବବାଣୀ ଶୁଣିଲେ : "ତମେ ଯଦି ଆଜି ଘରେ ନ ପହଞ୍ଚିବ, ତେବେ ମରିବ । ଯଦି ଘରେ ପହଞ୍ଚିବ, ତେବେ ତମ ସ୍ତ୍ରୀ ମରିବ!"

ଏ ଅଦ୍ଭୁତ ସତର୍କବାଣୀ ଶୁଣି ବ୍ରାହ୍ମଣଙ୍କର ହାଲୁକ ଶୁଖିଗଲା । ସେ ବଣ ଭିତରୁ କିପରି ଯଥାଶୀଘ୍ର ବାହାରିଯିବେ, ସେଥିପାଇଁ ପ୍ରାୟ ଦୌଡ଼ିବାକୁ ଲାଗିଲେ ।

କିନ୍ତୁ ଯିବେ କୁଆଡ଼େ? ଘରେ ପହଞ୍ଚିବା ମାତ୍ରେ ତ ସ୍ତ୍ରୀ ମରିବ । ଏ ସମସ୍ୟା ଉପରେ ଚିନ୍ତା କରି ତାଙ୍କୁ ଲାଗିଲା ସତେ ଅବା ତାଙ୍କ ମୁଣ୍ଡ ଖରାପ ହୋଇଯିବ! ସେ କାନ୍ଦି କାନ୍ଦି ବସିଲେ ।

ସେ ଗୋଟାଏ ଗଛମୂଳେ ବସି ପଡ଼ି ଆକାଶ ପାତାଳ ଚିନ୍ତା କଲେ । ସେ ଦୈବବାଣୀ କଥା ପାଶୋରି ଦେବାକୁ ଚେଷ୍ଟା କଲେ । କିନ୍ତୁ ତାହା ସମ୍ଭବପର ହେଲା ନାହିଁ । ସେ କଣ୍ଠସ୍ୱର ଏତେ ତୀବ୍ର ଥିଲା ଯେ ବାରମ୍ବାର ତାହା ତାଙ୍କ ମନ ଭିତରେ ପ୍ରତିଧ୍ୱନି ତୋଳୁଥାଏ । ତାକୁ ପାଶୋରିଦେବା ଯେତେ-ବେଳେ ସମ୍ଭବ ହେଲା ନାହିଁ, ସେ ନିଜକୁ ଏଇଆ ବୁଝାଇବାକୁ ଚେଷ୍ଟା କଲେ ଯେ ସେ ଦୈବବାଣୀ କୌଣସି ଦୁଷ୍ଟ ଲୋକ ଉଚ୍ଚାରଣ କରିଥିଲା; ତାଙ୍କୁ ଖାଲି ହଇରାଣ କରିବା ପାଇଁ । ସେଥିରେ ସତ୍ୟତା ନାହିଁ । କିନ୍ତୁ ଏସବୁ ଯୁକ୍ତି ସତ୍ତ୍ୱେ ମନରୁ ଭୟ ଘୁଞ୍ଚିଲା ନାହିଁ ।

ବଣ ଭିତରୁ ବାହାରି ସେ ଗୋଟାଏ ବଡ଼ ଗ୍ରାମରେ ପହଞ୍ଚିଲେ । ସେତେବେଳେ ବୋଧିସତ୍ତ୍ୱ ଜଣେ ସାଧୁ ରୂପେ ସେ ଅଞ୍ଚଳରେ ରହୁଥାନ୍ତି । ସେଦିନ ଗୋଟାଏ ଗଛ ମୂଳରେ ବସି ସାଧୁ ସ୍ଥାନୀୟ ଲୋକମାନଙ୍କୁ ସଦୁପଦେଶ ଦେଉଥିଲେ । ବ୍ରାହ୍ମଣ ଯାଇ ଶ୍ରୋତୃମଣ୍ଡଳୀ ଭିତରେ ଠିଆ ହେଲେ । ସେ ସାଧୁଙ୍କ ଉପଦେଶ ଶୁଣୁଥାନ୍ତି, କିନ୍ତୁ ମୁଣ୍ଡରେ କିଛି ପଶୁ ନଥାଏ । ସେ ସେପର୍ଯ୍ୟନ୍ତ ଆତଙ୍କିତ ଦିଶୁଥାନ୍ତି ।

ସଭା ଶେଷ ହେଲା । ଲୋକେ ସାଧୁଙ୍କୁ ପ୍ରଣାମ କରି ବିଦାୟ ନେବାକୁ ଆରମ୍ଭ କଲେ । ବ୍ରାହ୍ମଣ ସ୍ଥବିର ଭଳି ଠିଆ ହୋଇଥାନ୍ତି । କୁଆଡ଼େ ଯାଉ ନଥାନ୍ତି କି କିଛି କହୁ ନଥାନ୍ତି । ସାଧୁ ତାଙ୍କ ଉପରେ ଦୃଷ୍ଟିପାତ କଲେ । ତଥାପି ବ୍ରାହ୍ମଣ କିଛି ନ ଜାଣିଲା ପରି ଠିଆ ହୋଇଥାନ୍ତି ।

ସାଧୁ ଇଙ୍ଗିତରେ ତାଙ୍କୁ ପାଖକୁ ଡାକିଲେ ଓ ପଚାରିଲେ, "ତମେ ଏଡ଼େ ଚିନ୍ତିତ ଓ ଉଦ୍‌ବିଗ୍ନ ଦିଶୁଛ କାହିଁକି ?"

ବ୍ରାହ୍ମଣ ଚମକି ପଡ଼ିଲେ । ତାଙ୍କର ଯେପରି ଚେତା ଫେରି ଆସିଲା! ସେ ଧିରେ ଧିରେ ସାଧୁଙ୍କ ପାଖକୁ ଆସିଲେ । ସାଧୁଙ୍କ ମୁଖମଣ୍ଡଳକୁ ଅନାଇ ତାଙ୍କ ମନରୁ ଅଧା ଚିନ୍ତା ଚାଲିଗଲା । ଦୟା ଓ କରୁଣାରେ ଭରା ସାଧୁଙ୍କ ମୃଦୁବାଣୀରେ ସେ ଗଭୀର ସାନ୍ତ୍ୱନା ପାଇଲେ ।

"କ'ଣ ତମର ସମସ୍ୟା ?" ସାଧୁ ପଚାରିଲେ ।



ବ୍ରାହ୍ମଣ ସବୁ କଥା କହିଗଲେ ଓ ମିନତିଭରା କଣ୍ଠରେ କହିଲେ, "ସାଧୁଜୀ, ଆପଣ ମୋତେ ଏ ଅପୂର୍ବ ସଙ୍କଟରୁ କୌଣସି ମତେ ରକ୍ଷା କରନ୍ତୁ। ମୁଁ କରିବି କ'ଣ? ଘରକୁ ଯିବି ନା ନାହିଁ?"

ସାଧୁରୂପୀ ବୋଧିସତ୍ତ୍ୱ ନୀରବରେ କିଛି ସମୟ ଚିନ୍ତା କରି ପଚାରିଲେ, "ଏ ସତର୍କବାଣୀ ଶୁଣାଯିବା ପୂର୍ବରୁ ତମେ କ'ଣ କରୁଥିଲ?"

"ସାଧୁଜୀ! ମୁଁ ଗୋଟାଏ ଗଛମୂଳେ ବସି ମୋ ଥଳିରେ ଥିବା ଖାଦ୍ୟ ଖାଇ ବାଟ ଗୃଲଥିଲି।" ବ୍ରାହ୍ମଣ ଉତ୍ତର ଦେଲେ।

"ତମେ ଖାଇସାରି ପାଣି ପିଇଲଟି? କାହିଁ ତମ ପାଖରେ ପାଣି ପିଇବା ଭଳି କୌଣସି ପାତ୍ର ତ ଦେଖୁନାହିଁ!" ସାଧୁ ପଚାରିଲେ।

"ଆଜ୍ଞା, ପାଖରେ ଝରଣାଟିଏ ଥିଲା। ଖାଇସାରି ସେଠାରେ ଯାଇ ପାଣି ପିଇଲି।" ବ୍ରାହ୍ମଣ କହିଲେ।

"ଆଚ୍ଛା, ଥଳିରେ ଯେତେ ଖାଦ୍ୟ ଥିଲା ସବୁ ଖାଇଦେଲ?"

"ନା, ଅଧା ଖାଇଥିଲି।"

"ପାଣି ପିଇବାକୁ ଝରଣା ପାଖକୁ ଗଲାବେଳେ ଥଳିଟି ସାଥିରେ ଧରି ତୁମେ ଯାଇଥିଲଟି?"

"ନା ଆଜ୍ଞା, ଥଳିଟି ସେହି ଗଛମୂଳରେ ଥିଲା!"

"ଥଳିର ମୁହଁ ବନ୍ଦ କରି ଯାଇଥିଲ?"

ବ୍ରାହ୍ମଣ କିଛି ସମୟ ଚିନ୍ତା କଲେ। ତା'ପରେ ସେ ମନେ ପକାଇ ପାରିଲେ।



"ନା । ଖୋଲି ଥିଲି । ମୁଁ ପାଣି ପିଇସାରି ଆସି ମୁହଁ ବନ୍ଦ କରି ଥଳିଟି କାନ୍ଧରେ ପକାଇ ପୁଣି ଚାଲିବାକୁ ଲାଗିଲି ।"

"ଥଳିର ମୁହଁ ବନ୍ଦ କରିବା ପୂର୍ବରୁ ତା' ଭିତରକୁ ଦୃଷ୍ଟିପାତ କରିଥିଲ?" ବୋଧିସତ୍ତ୍ୱ ରୂପୀ ସାଧୁ ପଚାରିଲେ ।

"ନା ସାଧୁଜୀ, ଥଳି ଭିତରେ କ'ଣ ଥିଲା, ସେକଥା ତ ମୁଁ ଜାଣେ । ଦୃଷ୍ଟିପାତ କରନ୍ତି କାହିଁକି?" ବ୍ରାହ୍ମଣ ଉତ୍ତର ଦେଲେ ।

ବୋଧିସତ୍ତ୍ୱ ପୁଣି ଆଖି ବନ୍ଦ କରି ବସିଲେ । କିଛି ସମୟ ପରେ ସେ ବ୍ରାହ୍ମଣଙ୍କୁ ଥଳିଟି କାନ୍ଧରୁ ବାହାର କରି ତଳେ ଥୋଇ ଦେବାକୁ କହିଲେ । ବ୍ରାହ୍ମଣ ତାହା କରିବା ଉତ୍ତାରୁ ସେ ଜଣେ ଗୁଣିଆକୁ ଡକାଇ କହିଲେ, "ଦେଖିଲ ବାବୁ, ମୋର ଧାରଣା ଏହା ଭିତରେ ବିଷଧର ସର୍ପଟିଏ ରହିଛି !" ଗୁଣିଆ ଅଳ୍ପ ସମୟ ଭିତରେ ଥଳି ଭିତରୁ ସାପଟିଏ ବାହାର କରି ଆଣିଲା । ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ ।

ସାଧୁ ବ୍ରାହ୍ମଣଙ୍କୁ କହିଲେ, "ଯେତେବେଳେ ତମେ ପାଣି ପିଇବାକୁ ଝରଣା ପାଖକୁ ଗଲ, ସେତେବେଳେ ଏ ସାପଟି ତମ ଥଳିରେ ପ୍ରବେଶ କଲା । ତମେ ଆସି ଥଳି ବନ୍ଦ କଲ । ଜଣେ ବୃକ୍ଷ-ଦେବତା ଏହା ଦେଖୁଥାନ୍ତି । ସେ ବୁଝିଲେ, ଯଦି ତମେ ଘରକୁ ନ ଯାଇ ଆଉ କେଉଁଠି ରହିବ, ତେବେ ଉଦ୍‌ବୃତ୍ତ ଖାଦ୍ୟ ଖାଇବା ନିମନ୍ତେ ଥଳି ଫିଟାଇବ । ସେତେବେଳେ ସାପ ଯୋଗୁଁ ମରିବ । ଯଦି ଘରକୁ ଯିବ, ତେବେ ଥଳିରେ କ'ଣ ଅଛି ଜାଣିବା ପାଇଁ ତମ ସ୍ତ୍ରୀ ଥଳିଟି ଫିଟାଇବେ ଓ ସାପ ଯୋଗୁଁ ମରିବେ । ଏହାହିଁ ତାଙ୍କ ସତର୍କବାଣୀର ମର୍ମ । ଏଥର ଘରକୁ ଯାଇପାର । କିଛି ଭୟ ନାହିଁ ।"

ବ୍ରାହ୍ମଣ ସାଧୁଙ୍କୁ କି ଭାଷାରେ ଧନ୍ୟବାଦ ଦେବେ, ତାହା ବୁଝିପାରିଲେ ନାହିଁ । ଲୋକେ ସାଧୁଙ୍କର ଜ୍ଞାନବୁଦ୍ଧି ଦେଖି ଧନ୍ୟ ଧନ୍ୟ କଲେ ।





ଭାରତ-କାହାଣୀ

# ଛତ୍ରପତି ଶିବାଜୀ-୧

ମୋଗଲ ସାମ୍ରାଜ୍ୟର ଭିତ୍ତିକୁ ଦୋହ-ଲାଇ ଦେଇଥିବା ମହାନ୍ ବୀର ଶିବାଜୀ ୧୬୨୭ରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ସାହାଜୀ ବିଜାପୁର ସୁଲ୍‌ତାନ୍‌ଙ୍କ କର୍ମଗୃହୀ ଥିଲେ । ଶିବାଜୀ ପୁନାରେ ମାତା ଜିଜାବାଇ ଓ ଗାର୍ଜନ ଦାଦାଜୀଙ୍କ ପାଖରେ ବଢ଼ିଲେ ।

ଶିଶୁକାଳରୁହିଁ ଶିବାଜୀଙ୍କର ଅସାଧାରଣ ସାହସ, ବୁଦ୍ଧିମତ୍ତା ଏବଂ ନୈତିକତାର ପରିଚୟ ମିଳିଥିଲା । ଆଖପାଖର ବନ ପର୍ବତରେ ବାସ କରୁଥିବା ମାଓ୍ୱାଲି ଜାତିର ଲୋକେ ତାଙ୍କର ଅତ୍ୟନ୍ତ ଅନୁଗତ ହେଲେ । ତରୁଣ ଶିବାଜୀଙ୍କ ବ୍ୟକ୍ତିତ୍ୱ ସେମାନଙ୍କୁ ମୁଗ୍ଧ କରୁଥାଏ ।





ଶିବାଜୀ ସାହସୀ ଥିଲେ ସତ, କିନ୍ତୁ ଗର୍ବୀ ନଥିଲେ । ଧର୍ମ ପ୍ରତି ତାଙ୍କର ଗଭୀର ଆଗ୍ରହ ଥାଏ । ସନ୍ଥ ରାମଦାସ ନାମକ ମହାପୁରୁଷ ସେତେବେଳେ ଲୋକମାନଙ୍କୁ ଅତ୍ୟାଚାର ଅନାଚାର ବିରୁଦ୍ଧରେ ଲଢ଼ିବାକୁ ପ୍ରେରଣା ଦେଉଥାନ୍ତି । ଶିବାଜୀ ତାଙ୍କ ଦ୍ୱାରା ଗଭୀର ଅନୁପ୍ରାଣିତ ହେଲେ ।



ଶିବାଜୀ ଗୋଟିଏ ଶ୍ରେଷ୍ଠ ସୈନ୍ୟଦଳ ଗଢ଼ିଲେ । ସୈନ୍ୟମାନେ ତାଙ୍କ ପ୍ରତି ଗଭୀର ଅନୁଗତ୍ୟ ପୋଷଣ କରୁଥାନ୍ତି । ବିଜାପୁର ମୁଲକରେ ଥିବା ଗୋଟାଏ ପରେ ଗୋଟାଏ ଦୁର୍ଗ ସେ ଅଧିକାର କରିନେଲେ । ସୁଲତାନ ଉଦ୍‌ବିଗ୍ନ ହେଲେ । ସେ ନିଜ ସେନାପତି ଆଫ୍‌ଜଲ୍ ଖାଁଙ୍କୁ ଶିବାଜୀଙ୍କ ବିରୁଦ୍ଧରେ ଲଢ଼ିବାକୁ ପଠାଇଲେ ।

ଏକ ବିରାଟ ସୈନ୍ୟଦଳ ଧରି ଆଫ୍‌ଜଲ୍ ଖାଁ ଅଗ୍ରସର ହେଲେ । କିନ୍ତୁ ଶିବାଜୀଙ୍କ ସୈନ୍ୟମାନେ ସଂଖ୍ୟାରେ କମ ହେବା ସତ୍ତ୍ୱେ ଶତ୍ରୁପକ୍ଷକୁ ହଇରାଣ କରିବାକୁ ଲଗିଲେ । ଆଫ୍‌ଜଲ୍ ଖାଁ ଏକାକୀ ଶିବାଜୀଙ୍କୁ ଭେଟିବାକୁ ସ୍ଥିର ହେଲା । ଗୋଟିଏ ନିର୍ଜନ ସ୍ଥାନରେ ଦୁଇଜଣ ପରସ୍ପର ଆଡ଼େ ଆସୁଥିବାର ଦେଖାଗଲା।





ଆଫ୍‌ଜଲ୍ ଖାଁ ଶିବାଜୀଙ୍କୁ ଆଲିଙ୍ଗନ କରିବା ଛଳନାରେ ତାଙ୍କ ଗଳା ଚିପି ଦେବାକୁ ବସିଲେ । ଶିବାଜୀ ଏଭଳି ପରିସ୍ଥିତି ପାଇଁ ପ୍ରସ୍ତୁତ ହୋଇ ଆସିଥିଲେ । ସେ ନିଜ ବାମ କରରେ ବାଘନଖ ବୋଲି ଏକ ପ୍ରକାର ତୀକ୍ଷ୍ଣ ସାଞ୍ଚୁ ପିନ୍ଧିଥିଲେ । ସେ ସେହି ଅସ୍ତ୍ର ଆଫ୍‌ଜଲ୍ ଖାଁଙ୍କ ପିଠିରେ ଦାବି ଦେଲେ ଓ ଖାଁ ତଳେ ପଡ଼ିଯାଇ ପ୍ରାଣ ତ୍ୟାଗ କଲେ ।

ଶିବାଜୀ ମୋଗଲ-ଶାସିତ ଅଞ୍ଚଳମାନ ଅଧିକାର କରିବାକୁ ଲାଗିଲେ। ଆଓରଂଜେବ୍ ତାଙ୍କ ସେନାପତି ଶାୟେସ୍ତା ଖାଁଙ୍କୁ ପଠାଇଲେ। ଶାୟେସ୍ତା ପୁନାଠାରେ ଥିବା ଶିବାଜୀଙ୍କ ମୁଖ୍ୟ କର୍ମସ୍ଥଳୀ ଅଧିକାର କଲେ। ଦିନେ ରାତିରେ ଶିବାଜୀ ଓ ତାଙ୍କ ସୈନ୍ୟମାନେ ଗୋଟାଏ ବରାତ ଶୋଭାଯାତ୍ରାରେ ମିଶି ଶାୟେସ୍ତାଙ୍କ ଶିବିର ଆଗରେ ପହଞ୍ଚିଲେ।





ହଠାତ୍ ଶିବାଜୀ ଓ ତାଙ୍କର କୋଡ଼ିଏଜଣ ଅନୁଚର ସେ ଶିବିର ଆକ୍ରମଣ କଲେ। ତରବାରି ଉଞ୍ଚାଇ ଶିବାଜୀ ଶାୟେସ୍ତାଙ୍କ କୋଠରି ଭିତରେ ପଶିଲେ। ମୋଗଲ ସେନାପତିଟି ଝରକା ଡେଇଁ ତଳକୁ ଡେଇଁ ପଳାଇଗଲେ। କିନ୍ତୁ ଶିବାଜୀଙ୍କ ତରବାରି ଚୋଟରେ ସେ ତିନୋଟି ଅଙ୍ଗୁଳି ହରାଇଲେ।

ଆଓରଂଜେବଙ୍କ ତରଫରୁ ରାଜା ଜୟସିଂହ ଶିବାଜୀଙ୍କ ସହ ସାଲିସ ପାଇଁ ଆଲୋଚନା ଆରମ୍ଭ କଲେ। ଶିବାଜୀଙ୍କୁ ଆଗ୍ରାକୁ ନିମନ୍ତ୍ରଣ କରାଗଲା। ତାଙ୍କୁ ଯଥାର୍ଥ ସମ୍ମାନ ଦେବାର ପ୍ରତିଶ୍ରୁତି ଦିଆଗଲା। ଶିବାଜୀ ତାଙ୍କ ବାଳକ ପୁତ୍ର ଶମ୍ଭୁଜୀଙ୍କୁ ସାଥିରେ ଧରି ଗଲେ। କିନ୍ତୁ ତାଙ୍କ ପ୍ରତି ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରାଗଲା ନାହିଁ। ସେ ପ୍ରତିବାଦ କଲେ।





ଫଳରେ ସିଦ୍ଦୀଫୁଲାଦଙ୍କୁ ଗୋଟାଏ ଘରେ ଗୃହବନ୍ଦୀ କରାଗଲା । ଆଓରଂଜେବ ଜଣେ ପ୍ରବଳ ଶତ୍ରୁଙ୍କୁ ହାତମୁଠାରେ ପାଇଛନ୍ତି ବୋଲି ଖୁସି ହେଲେ । ଶିବାଜୀ ଅସୁସ୍ଥ ବୋଲି କହି ପୁଣ୍ୟ କାମ ନାମରେ ସବୁଦିନେ ମିଠେଇ ଭାର ବାହାରକୁ ବିତରଣ ପାଇଁ ପଠାଇଲେ । ମିଠେଇ ପାଛିଆର ଆକାର ଅବଶ୍ୟ ବଡୁଥାଏ ।

ଦିନେ ଶିବାଜୀ ଓ ଶମ୍ଭୂଜୀ ଦୁଇଟି ମିଠେଇ ପାଛିଆ ଭିତରେ ଲୁଚି ବସିଲେ । ପାଛିଆ ଦୁଇଟିକୁ ବାହାରକୁ ନିଆଗଲା । ଘର ଆଗରେ ପ୍ରହରୀ ଦେଉଥିବା ମୋଗଲ ସୈନ୍ୟମାନେ କିଛି ବୁଝି ପାରିଲେ ନାହିଁ । ଶିବାଜୀଙ୍କ କୌଶଳ ଜଣା ପଡ଼ିବା ବେଳକୁ ବହୁତ ଉଚ୍ଛୁର ହୋଇଗଲାଣି ।






ସନ୍ନ୍ୟାସୀ ଛଦ୍ମବେଶରେ ଶିବାଜୀ ଓ ଶମ୍ଭୂଜୀ ଆଗ୍ରା ଅତିକ୍ରମ କଲେ । ଦୂରରେ ସେମାନଙ୍କ ସକାଶେ ଘୋଡ଼ା ପ୍ରସ୍ତୁତ ହୋଇ ରହିଥାଏ । ଶିବାଜୀ ଓ ଶମ୍ଭୂଜୀ ଅଳ୍ପଦିନ ଭିତରେ ପୁନାରେ ଯାଇ ପହଞ୍ଚିଗଲେ । ପୁନା ସହର ଉତ୍ସବ-ମୁଖର ହେଲା । ଶିବାଜୀଙ୍କୁ ଖୁସି କରିବା ନିମନ୍ତେ ଆଓରଂଜେବ୍ ତାଙ୍କୁ ରାଜା ଉପାଧି ଦେଲେ ।

# ଶିକ୍ଷାଲାଭ !

ରଘୁ ସହରରେ ବେପାର କରି ଘରକୁ ଟଙ୍କା ଆଣୁଥାଏ । ସେ ଯେମିତି ବଳୁଆ, ସେମିତି ସାହସୀ ।

ଥରେ ସେ ନିଜ ଗାଁକୁ ଫେରୁଥାଏ । ଟଙ୍କା ଥଳିଟି ଏପରି ଭାବରେ ଅଣ୍ଟିରେ ଖୋସିଥାଏ, ତାହା ସମସ୍ତେ ଦେଖି ପାରୁଥାନ୍ତି ।

ବାଟରେ ଗୋଟାଏ ଚଟିଘରେ ସେ ଖିଆପିଆ କଲା । ଚଟିଘର ମାଲିକ ତାକୁ କହିଲେ, "ବାବୁ, ତୁମେ ଟଙ୍କା ଥଳିକୁ ଏମିତି ପଦାକୁ ଦେଖାଇ ଯିବା ଆସିବା କରିବା ଠିକ୍ ନୁହେଁ । ଚୋର ଖଣ୍ଟଙ୍କ ଆଖିରେ ପଡ଼ିବ ।"

ରଘୁ ଠୋ ଠୋ ହସି କହିଲା ଓ କହିଲା, "ମୋଠୁଁ ଟଙ୍କା ନେଇଯିବ ଏମିତି ଚୋର ଜନ୍ମ ହୋଇନାହିଁ !"

ରଘୁ ବିଶ୍ରାମ କରୁଛି, ଜଣେ ଦୁବଳିଆ ଲୋକ ତାକୁ କହିଲା, "ବାବୁ, ମୁଁ ଏଠି ମାଲିସ୍ କରେଁ । ଆପଣଙ୍କୁ କରିଦେବି ? ଯାହା ଖୁସି ଦୁଇ ଚାରିଅଣା ଦେବେ !"

ରଘୁ ରାଜି ହେଲା । ବୁଢ଼ା ଏମିତି ଭାବରେ ତାକୁ ମାଲିସ୍ କଲା ଯେ ତାକୁ ନିଦ ଲାଗିଗଲା । ନିଦରୁ ଉଠି ଦେଖେ ତ ଟଙ୍କା ଥଳି ନାହିଁ । ସେ ବଡ଼ ବ୍ୟସ୍ତ ହେଲା । ତେବେ କିଛି ସମୟ ପରେ ହସି ହସି ସେ ମାଲିସବାଲା ଆସି ତାକୁ ତା' ଟଙ୍କା ଥଳି ଫେରାଇଦେଲା ଓ କହିଲା, "ବାବୁ, ଏଥର ବୁଝିଲେଟି ? ଚଟିଘର ମାଲିକଙ୍କ କଥାକୁ ହସି ଉଡ଼ାଇଦେବା ଉଚିତ ନଥିଲା ।"






# ପିଶାଚ ଓ ପିଚାଶ!

ଗୋଟାଏ ଗାଁରେ ସୁର ନାମକ ଯୁବକ ଦୋକାନ କରିଥାଏ । ଛୋଟିଆ ଦୋକାନରେ ବିକ୍ରି ପାଇଁ ଯାହା ଯେତିକି ମାଲପତ୍ର ଦରକାର, ସେ ଯାଇ ସେସବୁ ସହରରୁ କିଣି ଆଣୁଥାଏ ।

ସୁରର ପରିବାର ବଡ଼, ଅଥଚ ଆୟ ଅଳ୍ପ । ତେଣୁ ସେ ପଇସାପତ୍ର ଖର୍ଚ୍ଚ କରିବାରେ ବହୁତ ସାବଧାନ ଥାଏ । ସହରରୁ ଯେଉଁ ଜିନିଷପତ୍ର କିଣେ, ତାହା ନିଜ ମୁଣ୍ଡରେ ଲଦି ବଣ ବାଟରେ ଗାଁକୁ ଆଣେ । ଗାଡିରେ ଆଣିଲେ ପଇସା ପଡିବ । ପୁଣି ରାଜପଥ ଦେଇ ଆଣିଲେ କର ଦେବାକୁ ପଡିବ । ତା'ର ଆୟ କେତେ ଯେ ସେ ଏତେ ଦେଇପାରିବ ?

ଦିନେ ସେ ବଣ ଭିତର ଦେଇ ଆସୁଛି, ହଠାତ୍ ତା' ଆଗକୁ ଲୁଦି ପଡ଼ିଲା ଗୋଟାଏ ପିଶାଚ । ସୁର ଚମକି ପଡିଲା, କିନ୍ତୁ ଉପରକୁ ସେ ଭାବ ଦେଖାଇଲା ନାହିଁ । ଅଳ୍ପ ହସି କହିଲା, "କହୋ ପିଶାଚ ପୁଅ । ଭଲ ଅଛ ତ ? ଅନେକ ଦିନ ହେଲା ପିଶାଚଟିଏ ଦେଖି ନଥିଲି । ଯେବେଠୁଁ ପିଗୃଶ ଭୟରେ ପିଶାଚମାନେ ଆମ ଗାଁ ଛାଡ଼ି ପଳାଇ ଗଲେଣି, ସେବେଠୁଁ ଆଉ ପିଶାଚ ଦେଖିବାକୁ ମିଳୁଛି ନାହିଁ!"

ଆଶ୍ଚର୍ଯ୍ୟ ହୋଇ ପିଶାଚ ପଚାରିଲା, "ପିଗୃଶ ? ସିଏ କିଏ ? ତା' ଡରରେ ପୁଣି ପିଶାଚମାନେ ପଳାଇଗଲେ, ଏହା କିପରି କଥା ? ତମେ ପୁଣି ମୋତେ ଦେଖି ଡରୁନାହିଁ ଦେଖୁଛି! ଏହାର ରହସ୍ୟ ବା କ'ଣ ?"

ସୁର ହସିଲା ଓ ତା'ପରେ ଗମ୍ଭୀର ହୋଇ ଯେପରି ବହୁତ ଗୁରୁତର କଥା କହିବ, ସେହି ଭାବ ଦେଖାଇ ପିଶାଚ ପାଖକୁ ଘୁଞ୍ଚିଗଲା ।

ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ

"ପିଲାବେଳେ ମୁଁ ପିଶାଚଙ୍କୁ ଡରୁଥିଲି । କିନ୍ତୁ ପିଶୁଣମାନଙ୍କ ସହ ମିଶାମିଶି କଲା ପରେ ଆଉ ପିଶାଚଙ୍କୁ ଡରୁ ନା । ତମେ ପିଶାଚମାନେ ଯେତେହେଲେ ଭଦ୍ର ଓ ଉପକାରୀ । କିନ୍ତୁ ପିଶୁଣମାନେ ହେଲେ ଭୀଷଣ ।" ସୁର କହିଲା ।

"ସତେ ? କେମିତି ଗୋଟାଏ ପିଶୁଣ ଦେଖନ୍ତି!" ପିଶାଚ କହିଲା ।

"ଗୋଟାଏ କାହିଁକି, ଯୋଡ଼ାଏ ଦେଖାଇ ଦେବି । କିନ୍ତୁ ତମକୁ ଏ ରୂପରେ ଦେଖିଲେ ସେମାନେ କଞ୍ଚା ଚୋବାଇ ଖାଇଯିବେ ।" ସୁର କହିଲା ।

"ତମର ଏ ବସ୍ତା ଭିତରେ କ'ଣ ଅଛି ? ମୁଁ ସେଥି ସହିତ ଅଦୃଶ୍ୟ ହୋଇ ରହିଯାଇ ପାରିବି ।" ପିଶାଚ କହିଲା ।

"ବସ୍ତାରେ ଚାଉଳ ଅଛି । ତମେ ସେଇଆ କର ।" ସୁର ପିଶାଚର ପ୍ରସ୍ତାବକୁ ସମର୍ଥନ କଲା ।

ପିଶାଚ ଚାଉଳ ସହିତ ମିଶି ରହିଲା । ସୁର ବୋଝ ଧରି ବଣ ରାସ୍ତା ଛାଡ଼ି ରାଜପଥକୁ ବାହାରି ପଡ଼ିଲା । ବଡ଼ ଛକ ଉପରେ ସିପାହୀମାନେ ଜଗିଥାନ୍ତି । ସେମାନେ ନୂଆ ଜିନିଷ ଉପରୁ କର ଆଦାୟ କରୁଥାନ୍ତି ।

"କ'ଣ ନେଇ ଚାଲିଛୁ ?" ସିପାହୀମାନେ ପଚାରିଲେ ।

"କିଛି ନାହିଁ ଭାଇ, ଚାଉଳ!" ସୁର ଉତ୍ତର ଦେଲା ।

"ଦେଖିବା!" କହି ସିପାହୀମାନେ ଲାଠିରେ ତା' ବସ୍ତାକୁ ଦୁଇ ଚାରିଥର ବାଡ଼େଇ ଦେଲେ ଓ ଗୋଟିଏ ଛୁରୀରେ ବସ୍ତାଟିକୁ ଭୁଷି ଦେଲେ ।



"ଚିଅନ୍ତୁ କର । ଆଉ ମୋ ବସ୍ତାକୁ କଷ୍ଟ ଦିଅନ୍ତୁ ନାହିଁ ।" କହି ସୁର କର ଦେଇଦେଲା । ତା'ପରେ ସେ ବାଙ୍କ ବୁଲି ପୁଣି ବଣ ଭିତରକୁ ଆସିଲା ଓ ବସ୍ତା ମୁହଁ ଖୋଲି ଦେଲା ।

ପିଶାଚ ବାହାରି ଆସିଲା । ସେ ଲଠି ମାଡ଼ରେ ସିଧା ଠିଆ ହୋଇ ପାରୁ ନଥାଏ । ପୁଣି ଛୁଟି ଭୁଷା ଖାଇ ତା' ଘୁଙ୍ଗରେ ଦରଜ ।

"ଘାଇ, ସେ ପିଶୁଣ ଗୁଡ଼ାକ ଏଡ଼େ ଦୁଷ୍ଟ ? ଦେିବକୁ ମୋ ଦେହ ବାୟୁରେ ଗଢ଼ା ବୋଲି ସିନା ଛୁଟ ଭୁଷା ଖାଇ ମଧ ବଞ୍ଚିଗଲି !" ପିଶାଚ କହିଲା ।

"ମୁଁ ସେମାନଙ୍କୁ କର ଦେଲି ବୋଲି ସିନା ବଞ୍ଚିଗଲି ! ନହେଲେ ସେମାନେ ତମକୁ ଆହୁରି କଷ୍ଟ ଦେଇଥାନ୍ତେ ।" ସୁର କହିଲା ।

"କେତେ କ'ଣ ଦେଲି ? ମୋତେ ହିସାବ ଆସେ ନାହିଁ । ତମେ ସେ ଗଛମୂଳେ ଖୋଳି ଦେଖ । ଗୁଡ଼ାଏ ସୁନାରୂପା ପୋତା ଅଛି । ତମେ ଯାହା ଦେଇଛ, ସେ ବାବଦରେ ଯାହା ଉଚିତ ନେଇଯାଅ ।" ପିଶାଚ କହିଲା ।

ସୁର ଖୋଳି ଦେଖିବା ବେଳକୁ ପାଞ୍ଚ ଥାଏ ହେବ ସୁନା ରୂପା ଖେକା ସେଠି ରହିଛି ।

"ପିଶାଚ ପୁଅ, ତମକୁ ଯଦି ହିସାବ ଜଣାନାହିଁ, ତେବେ କହି ଦେଉଛି । ମଣିଷଙ୍କର ଝଙ୍କାଏ ମାନେ ପିଶାଚଙ୍କର ପାଞ୍ଚଥାଏ ସୁନାରୁପା । ଏଠି ପାଞ୍ଚଥାଏ ମାତ୍ର ଅଛି । ନେଇଯିବ ?" ସୁର ପଚାରିଲା ।

"ନାଅ, ନାଅ । ମୁଁ କାହିଁକି ତମର ଧାରୁଆ ହୋଇ ରହିବ ?" ପିଶାଚ କହିଲା ।

ସୁର ସେ ବିପୁଳ ସମ୍ପତ୍ତି ଧରି ବଣ ବାହେରେ ସନ୍ଧ୍ୟାବେଳକୁ ଘରେ ପହଞ୍ଚିଲା । ସେ ଧନୀ ହୋଇଗଲା ଓ ଆରାମରେ ରହିଲା । "ପିଶାଚ ଓ ପିଶୁଣଙ୍କ ସୌଜନ୍ୟରୁ ମୋର ଲାଭ ହୋଇଛି ।" ସେ କହେ । କେହି କିଛି ବୁଝନ୍ତି ନାହିଁ ।





# ଭୌତିକ କାଣ୍ଡ !

ଅନେକ ଦିନ ତଳର କଥା । ଆଦିତ୍ୟ ରାଜ-ପ୍ରତିନିଧି ରୂପେ ନୂଆ କରି ଶଙ୍କରପୁରମ୍ ତାଲୁକକୁ ଆସିଥାଏ । ସେଠାରେ ଥିବା ରାଜ-ପ୍ରତିନିଧିଙ୍କ ବିରାଟ କୋଠାଘର, ମୂଲ୍ୟବାନ୍ ଆସ୍‌ବାବ୍ ପତ୍ର ଇତ୍ୟାଦି ଦେଖି ସେ ମନେ ମନେ ବହୁତ ଗର୍ବ ଅନୁଭବ କରୁଥାଏ । ପୂର୍ବରୁ ତା' ଭଳି ଅଳ୍ପ ବୟସର ଯୁବକ କେହି କେବେ ସେ ବଡ଼ ପଦ ପାଇ ନଥିଲେ । ଶଙ୍କରପୁରମର ବିଶିଷ୍ଟ ଲୋକମାନେ ଆସି ତାକୁ ସଙ୍ଖୋଳିଗଲେ । ସମସ୍ତଙ୍କ ମୁହଁରେ ସେଇ ଗୋଟିଏ କଥା : "ଆପଣ ଅସାଧାରଣ ମେଧାବୀ ହୋଇ ନଥିଲେ କି ମହାରାଜ ଆପଣଙ୍କୁ ଏତେ ବଡ଼ ତାଲୁକ ଉପରେ ହାକିମ କରି ପଠାଇଥାନ୍ତେ !"

ଲୋକେ ଯାହା କହୁଥିଲେ, ସେଥିରେ ମିଛ ନଥିଲା । ସାଧାରଣତଃ ପ୍ରବୀଣ ରାଜ-କର୍ମଚାରୀମାନେ ଅଥବା ସମ୍ଭ୍ରାନ୍ତ ଓ ବୟସ୍କ ଅମାତ୍ୟମାନେ ଗୋଟିଏ ଗୋଟିଏ ଅଞ୍ଚଳ ଉପରେ ରାଜ-ପ୍ରତିନିଧି ହୋଇ ଆସୁଥାନ୍ତି । ଆଦିତ୍ୟ ବୟସର କୌଣସି ଯୁବକ ସେ ପଦରେ ପୂର୍ବରୁ ଅଧିଷ୍ଠିତ ହୋଇ ନଥିଲେ । ଆଦିତ୍ୟ ନିଜେ ଯେ ସେକଥା ଜାଣି ନଥିଲା, ତାହା ନୁହେଁ ।

ଅବଶ୍ୟ ଆଦିତ୍ୟ ସେ ବଡ଼ ପଦ ପାଇବାର ଭଲ କାରଣ ଥିଲା । ଆଦିତ୍ୟର ବାପା ଦରବାରରେ ଜଣେ ଅମାତ୍ୟ ଥିଲେ । ଦିନେ ରାଜା ଶୀକାରକୁ ଗଲବେଳେ ତାଙ୍କୁ ହଠାତ୍ ଗୋଟାଏ ଭାଲୁ ଆକ୍ରମଣ କଲା । ଆଦିତ୍ୟର ବାପା ରାଜାଙ୍କୁ ରକ୍ଷା କରିବାକୁ ଯାଇ ଭୀଷଣ ଭାବରେ ଆହତ ହେଲେ ଓ କେଇଦିନ ପରେ ମରିଗଲେ । ସେ ଯେପରି ବୀରତ୍ୱ ଦେଖାଇ ରାଜାଙ୍କୁ ରକ୍ଷା କଲେ, ତାହା ସମସ୍ତଙ୍କଠାରୁ



ଆଶା କରିପାରେନା। ସମସ୍ତେ ତାଙ୍କ ଆତ୍ମତ୍ୟାଗର ଦୃଷ୍ଟାନ୍ତ ଦେଖି ଚମତ୍କୃତ ହେଲେ। ରାଜା ମୁଗ୍ଧ ହେଲେ। ତାଙ୍କର ପ୍ରାଣ ରକ୍ଷା କରିଥିବା ଆମାତ୍ୟଙ୍କ ପ୍ରତି କୃତଜ୍ଞତା ସ୍ୱରୂପ ସେ ଆଦିତ୍ୟକୁ ସେ ବଡ଼ ପଦ ଦେଇଦେଲେ। ଅବଶ୍ୟ ଆଦିତ୍ୟ ଯୋଗ୍ୟ ଯୁବକ। କିନ୍ତୁ ସେଭଳି ଯୋଗ୍ୟ ଯୁବକ ତ ରାଜ୍ୟରେ ଆହୁରି ଚାରି ପାଞ୍ଚଶହ ଥିଲେ !

ଲୋକଙ୍କଠାରୁ ଖୋସାମଦ ପୂର୍ଣ୍ଣ କଥା ଶୁଣି ଶୁଣି ଆଦିତ୍ୟ ବି କ୍ରମେ ବିଶ୍ୱାସ କଲା କି ସେ ବାସ୍ତବିକ ଅସାଧାରଣ ମେଧାବୀ।

ଧିରେ ଧିରେ ତା' ମନକୁ ଗର୍ବ ଛୁଇଁଲା। କିନ୍ତୁ ସେ ବୁଦ୍ଧିମାନ ହୋଇଥିବାରୁ ନିଜ ଆଗ୍ରହ ବ୍ୟବହାରରେ ସେ ଭାବ ପ୍ରକାଶ ପାଇବାକୁ ଦେଲା ନାହିଁ।

ଶଙ୍କରପୁରମ୍ କଚେରୀର ପ୍ରଧାନ ଗୁମାସ୍ତା ବଂଶୀଧରଙ୍କର ଗୋଟିଏ ଅତ୍ୟନ୍ତ ସୁନ୍ଦରୀ ଝିଅ ଥିଲା। ଆଦିତ୍ୟ ତାକୁ ଦେଖି ମୁଗ୍ଧ ହେଲା। ସେ ଭୁଲିଗଲା କି ପିତୃବନ୍ଧୁ ଶ୍ୟାମସୁନ୍ଦରଙ୍କ କନ୍ୟା ସୁମତିକୁ ବିଭା ହେବା ସକାଶେ ସେ ଆଗରୁ ପ୍ରାୟ କଥା ଦେଇଥିଲା।

ସୁମତି ଦେଖିବାକୁ ଅତ୍ୟନ୍ତ ସୁନ୍ଦରୀ ନହେଲେ ବି ଗୁଣରେ ସେଭଳି ଝିଅ ସହଜରେ ମିଳିବେ ନାହିଁ। ଆଦିତ୍ୟର ବାପା ସେ ଝିଅକୁ ତା' ପିଲାବେଳରୁ ଲକ୍ଷ୍ୟ କରୁଥିଲେ। ତେଣୁ ସେ ଆଦିତ୍ୟ ତାକୁ ବାହାହେଉ ବୋଲି ଚାହୁଁଥିଲେ ଓ ସେଥିରେ କେହି କୌଣସି ଆପତ୍ତି କରିବାର କାରଣ ନଥିଲା।

ଦିନେ ଆଦିତ୍ୟର ବାଲ୍ୟବନ୍ଧୁ କୁମାର ଆସି ପହଞ୍ଚିଲା। "ବାଃ ଆଦିତ୍ୟ! ସୁନ୍ଦର ଘର ପାଇଛୁ। ସୁମତି ଆସିଲେ ଏ ଘରକୁ ସ୍ୱର୍ଗରେ ପରିଣତ କରିଦେବ।" କୁମାର କହିଲା।

"କୁମାର, ତୁ ଆସିଲୁ ଭଲ କଲୁ। ତୁ ଯାଇ ଶ୍ୟାମସୁନ୍ଦରବାବୁଙ୍କୁ ବୁଝାଇ କହି ଦେ, ସୁମତି ପାଇଁ ସେ ଅନ୍ୟ ପାତ୍ର ଦେଖନ୍ତୁ।" ଆଦିତ୍ୟ କହିଲା।

"କିରେ, ଏିଏ କି କଥା ? ସୁମତି ଭଳି ଗୁଣବତୀ କନ୍ୟାକୁ ତୁ ପ୍ରତ୍ୟାଖ୍ୟାନ କରୁଛୁ ? କଥା କ'ଣ ?" ଆଶ୍ଚର୍ଯ୍ୟ ହୋଇ କୁମାର



ପଚାରିଲା । କ୍ରମେ ଆଦିତ୍ୟଠୁଁ ସେ ତା' ମନକଥା ବୁଝିନେଲା । ଆଦିତ୍ୟ ସୁମତିଠାରୁ ଅଧିକ ସୁନ୍ଦରୀ କନ୍ୟା ଦେଖିଛି !

କୁମାର ଗମ୍ଭୀର ଭାବରେ ଆଦିତ୍ୟକୁ ଜଣାଇଲା କି ତା'ର ମନୋଭାବ ତା' ନିଜ ପାଇଁ ମଙ୍ଗଳକର ହେବନାହିଁ । କିନ୍ତୁ ଆଦିତ୍ୟ ସେକଥା ବୁଝିଲା ନାହିଁ ।

ରାତିରେ ପଦଚାରଣା କରିବା ଆଦିତ୍ୟର ଅଭ୍ୟାସ ଥିଲା । କୁମାର ତା'ସହ ବୁଲୁଥାଏ । କୁମାର ଚାଲିଯିବା ପରେ ବି ଏକାକୀ ଆଦିତ୍ୟ ଗାଁ ସେପଟେ ଥିବା ସରୋବର ଆଡ଼େ ରାତିରେ ବୁଲି ଆସୁଥାଏ ।

ଦିନେ ରାତିରେ ସେ ଦେଖିଲା ସରୋବର କୂଳରେ ଯୋଡ଼ାଏ ଲୋକ ମାଡ଼ଗୋଳ ହେଉଛନ୍ତି । "କଥା କ'ଣ କହୋ ?" ପଚାରି ଆଦିତ୍ୟ ସେମାନଙ୍କ ପାଖରେ ପହଞ୍ଚିଲା । ସେମାନେ ମାଡ଼ଗୋଳରୁ କ୍ଷାନ୍ତ ହୋଇ କହିଲେ, "ବୁଝୁଥିବ ଆମେ ମଣିଷ ନୋହୁଁ, ଭୂତ । ବନୋଦିନୀର ରଙ୍ଗ ଚମ୍ପା ଭଳି ନା ଗୋଲାପ ଭଳି, ତାହାହିଁ ଆମ ଝଗଡ଼ାର କାରଣ । ତମ ମତ କ'ଣ ?"

ଭୂତ ବୋଲି ଶୁଣି ଆଦିତ୍ୟ ଚମକି ପଡ଼ିଲା । କିନ୍ତୁ ବାହାରକୁ ସେ ତାହା ନ ଦେଖାଇ ସ୍ୱାଭାବିକ ବ୍ୟବହାର କରିବାର ଚେଷ୍ଟା କଲା ।

"ତମ ମତ କ'ଣ କହୁନାହଁ କିଆଁ ?" ଦୁଇ ଭୂତ ପୁଣି ପଚାରିଲେ ।

"ବନୋଦିନୀ କିଏ ମୁଁ ଜାଣେନା !" ଆଦିତ୍ୟ କହିଲା ।

"ଆସ, ଦେଖିବ ।" ଏହା କହି ଭୂତ ଦୁଇଜଣ ଚଟାପଟ ଆଦିତ୍ୟକୁ ଟେକି ନେଇ ପାଖରେ ଥିବା ଗୋଟାଏ କୋଠା ଉପରକୁ ନେଇଗଲେ । ସେଠି ଶୋଇଥିଲା ଅସାମାନ୍ୟା ସୁନ୍ଦରୀ କନ୍ୟାଟିଏ । ମୁଗ୍‌ଧ ହୋଇ ଆଦିତ୍ୟ ତା' ଆଡ଼େ ଅନାଇ ରହିଲା । ଭୂତ ଦୁଇଜଣ କେତେବେଳେ କୁଆଡ଼େ ଚାଲିଗଲେ ସେ ଜାଣିପାରିଲା ନାହିଁ ।

"ଚୋର ! ଚୋର !" ଚିତ୍କାର କରି ସେଠାରେ ଥିବା ସେ ସୁନ୍ଦରୀ ଝିଅଟି ହଠାତ୍ ଉଠି ବସିଲା ।



"ଆହା, ପାଟି କରନା, ପାଟି କରନା। ମୁଁ ଚୋର ନୁହେଁ। ମୁଁ ତମ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତମକୁ ଦେଖୁଥିଲି।" ଆଦିତ୍ୟ ବୁଝାଇଲା।

"ଚୋର! ଚୋର!" ଝିଅଟି ପୁଣି ପାଟି କଲା। ଆଦିତ୍ୟ ପୁଣି କହିଲା, "ଶୁଣ, ମୋ ପରିଚୟ ପାଇଲେ ତମେ ଏମିତ ଚିତ୍କାର କରିବ ନାହିଁ। ମୁଁ ଆଦିତ୍ୟ, ଏଠାକାର ରାଜପ୍ରତିନିଧି। ମୁଁ ତମକୁ ବିଭା ହେବାକୁ ପ୍ରସ୍ତୁତ। ଏଥର ଖୁସି?"

"ଖୁସି? ହଇରେ ଦୁଷ୍ଟ, ମୂର୍ଖ, ପାଷଣ୍ଡ! ତୋ ନିଜ ଚେହେରା କେବେ ଦର୍ପଣରେ ଦେଖିଛୁ? ମୁଁ ତୋତେ କେଉଁ ସୁଖରେ ବାହା ହେବି? ଚୋର! ଚୋର! ଭାଇ, ଗଲ କୁଆଡ଼େ?"

ଏଥର ଲଟି ଧରି ଝିଅର ଭାଇ ଛାତ ଉପରେ ଆସି ପହଞ୍ଚିଲା। ଆଦିତ୍ୟର କୌଣସି କୈଫିୟତ୍ ନ ଶୁଣି ସେ ତାକୁ ନେଇ ଗୋଟାଏ ଘର ଭିତରେ ବନ୍ଦୀ କଲା। "ସକାଳେ ତୋ ବିଚାର ହେବ!" କହି ସେ ଚାଲିଗଲା।

ସକାଳ ହେବା ପୂର୍ବରୁ ଆଦିତ୍ୟ କବାଟ ବାଡ଼େଇବାକୁ ଲାଗିଲା। କବାଟ ଖୋଲି-ଦେଲେ ସେ ବାଟଦେଇ ଯାଉଥିବା ଚାରି ପାଞ୍ଚଜଣ ସାଧାରଣ ଲୋକ। ସେମାନେ ଆଦିତ୍ୟକୁ ଚିହ୍ନି ନଥିଲେ। ସେମାନେ କେବଳ ଏତିକି କହିଲେ, "ବାବୁ, ଏ ଭୂତ କୋଠିକୁ ତମେ କିପରି ଆସିଲ?" ସେମାନେ ନିଜ ବାଟରେ ଗଲେ। ଆଦିତ୍ୟ ତା' କୋଠିକୁ ଫେରିଲା।

ରାତିରେ ସେ ଲଟି ଧରି ପୁଣି ସରୋବର ଆଡ଼େ ଗଲା। ସେଠି ସେ ଦୁଇ ଭୂତ ବସିଥିଲେ।

"ଆସ ବାବୁ ଆସ।" ଭୂତମାନେ ଡ଼ାକିଲେ।

"ତମେ କାହିଁକି ମୋତେ ଗତକାଲି ଏପରି ଅପମାନ ଦେଲ?" ଲଟି ଉଞ୍ଚାଇ ଆଦିତ୍ୟ ପଚାରିଲା।

"କହିବା କହିବା। ଲଟି ତଳକୁ କର। ଲଟି ମାଡ଼ରେ ଭୂତର କିଛି ହୁଏ ନାହିଁ।



ବୁଝିଲ ? ଆମର ହାଡ଼ ମାଂଶ ନାହିଁ ।" ଆନୁନାସିକ କଣ୍ଠରେ ଦୁଇ ଭୂତ ବୁଝାଇ ଦେଲେ । ତା'ପରେ ସେମାନେ କହିଲେ, "ଆମେ କାହିଁକି ଏପରି କଲୁଁ ବୁଝିବାକୁ ହେଲେ ବିବେକ ଦରକାର । ତମର ବିବେକ ଅଛି ବୋଲି ଆଶା । ଆଚ୍ଛା, ସୁମତିକୁ ତମେ କାହିଁକି ପ୍ରତ୍ୟାଖ୍ୟାନ କରୁଛ ?"

ଆଦିତ୍ୟ ଏ ପ୍ରଶ୍ନ ଆଶା କରି ନଥିଲା । ସେ ଚମକି ଉଠିଲା ।

ପ୍ରଥମ ଭୂତ କହିଲା, "ଗୁମାସ୍ତା ଝିଅ ସୁମତିଠୁଁ ସୁନ୍ଦର ବୋଲି ତ ? ଆଚ୍ଛା, ତାଠୁଁ ବଳି ସୁନ୍ଦରୀ ଦେଖି ତୁମେ ବାହା ହେବାକୁ ମନ କଲ । କାଲି ଯଦି ଆହୁରି ସୁନ୍ଦରୀ ଦେଖିବ, ତେବେ ?"

ଆଦିତ୍ୟ ନୀରବ ରହିଲା ।

ଦ୍ୱିତୀୟ ଭୂତ କହିଲା, "ଯେଉଁ ସୁନ୍ଦରୀ ବିନୋଦିନୀର ରୂପ ଦେଖି କାଲି ବିଭା ହେବାକୁ ଭାବିଲ, ତା'ର ଗୁଣ କପରି ଦେଖିଲ ? ତମ ପ୍ରତି ସେ କପରି ବ୍ୟବହାର କଲା ? କପରି ଭାଷା କହିଲା ? ଖାଲି ଚେହେରା ଚକ୍ ଚକ୍ କରୁଥିଲେ ଯେ ଭାଷା ବା ବ୍ୟବହାର ଭଲ ହୋଇଥିବ, ଏପରି କଥା ନାହିଁ । ବୁଝୁଛଟି ?"

ଆଦିତ୍ୟ ମୁଣ୍ଡ ହଲାଇଲା ।

ପ୍ରଥମ ଭୂତ ପୁଣି କହିଲା, "ଆଚ୍ଛା, ତମେ ଯେ ଅଧିକରୁ ଅଧିକ ସୁନ୍ଦରୀ ଖୋଜୁଛ, ତମ ପାଇଁ ଠିକ୍ ହୋଇଥିବା କନ୍ୟା ଯଦି ସେମିତି ଅଧିକରୁ ଅଧିକ ସୁନ୍ଦର ପାତ୍ର ଖୋଜି ତମକୁ ପ୍ରତ୍ୟାଖ୍ୟାନ କରନ୍ତା, ତେବେ ତମ ମନ କପରି ହୁଅନ୍ତା ?"

ଆଦିତ୍ୟ ମୁଣ୍ଡ ପୋତି ଠିଆ ହୋଇ ରହିଲା ।

ଦ୍ୱିତୀୟ ଭୂତ କହିଲା, "ଖାଲି ଉପର ରୂପରେ ମୋହିତ ହେବା ଲୋକେ ଯେ ମୂଢ଼, ଏତକ ବୁଝିବା ଭଳି ଜ୍ଞାନ ତମର ନାହିଁ ? ସୁମତିର ସ୍ୱଭାବ ଭିତରର ସୌନ୍ଦର୍ଯ୍ୟ କେଡ଼େ ବେଶି ତମେ ବୁଝୁନାହଁ ?"

"ବୁଝୁଛି । ଆଗାମୀ କାଲି ଲୋକ ପଠାଇ ସୁମତି ସହ ବାହାଘର ତାରିଖ ଠିକ୍ କରିବି ।" ଆଦିତ୍ୟ କହିଲା ।

"ଚମତ୍କାର! ସେଥିରେ ତମ ପରଲୋକଗତ ପିତାଙ୍କୁ ମଧ୍ୟ ଶାନ୍ତି ମିଳିବ। ସେ ସୁମତିକୁ ଠିକ୍ କରିଥିଲେ। ତମେ ବି ପସନ୍ଦ କରିଥିଲ। ସେକଥା ଭୁଲି ଯାଅନାହିଁ।" ଏହା କହି ଦୁଇ ଭୂତ ଅନ୍ଧାର ଭିତରେ ହଜିଗଲେ।

ପରଦିନ ଆଦିତ୍ୟ ଘୋଡ଼ା ଚଢ଼ି ଯାଇ କୁମାର ଘରେ ପହଞ୍ଚିଲା କହିଲା, "ଭାଇ, ତୁ ଯାଇ ବାହାଘର ତାରିଖ ଠିକ୍ କରୁନାହୁଁ କାହିଁକି?"

"ଦେଖ୍, ସେ ଗୁମାସ୍ତା ଝିଅ ମୋର ଜମା ପସନ୍ଦ ନୁହେଁ!" କୁମାର ଏପରି କହିଲା।

"ଆରେ, ତା' କଥା କିଏ କହୁଛି? ମୁଁ ସୁମତି କଥା କହୁଛି।"

କୁମାର ଆଦିତ୍ୟକୁ କୁଣ୍ଢାଇ ପକାଇଲା। ତା'ପରେ କହିଲା, "କିନ୍ତୁ ଆଜି ରାତିରେ ତୋତେ ମୋର ତିନିଜଣ ଶୁଭେଚ୍ଛୁ ସହ ପରିଚୟ କରାଇ ଦେବି। ତା'ପରେ ଯାଇ ସୁମତି ଘରକୁ ଯିବା।"

ରାତିରେ କୁମାର ଆଦିତ୍ୟକୁ ତା' ରଙ୍ଗମଞ୍ଚକୁ ନେଇଗଲା। କୁମାର ସେ ରଙ୍ଗମଞ୍ଚର ପରିଚାଳକ। ସେଠି ଆଦିତ୍ୟ ଆଶ୍ଚର୍ଯ୍ୟ ହୋଇ ସେ ଦୁଇ ଭୂତ ଓ ବନୋଦେବୀକୁ ଭେଟିଲା। ସେମାନେ ଆଦିତ୍ୟର ନାଟ୍ୟଦଳର ସଭ୍ୟ।

"କୁମାର! ତୁ ଏମିତି ନାଟକ କଲୁ!" ଆଦିତ୍ୟ ଆଶ୍ଚର୍ଯ୍ୟ ହୋଇ କହିଲା।

"ହଁ ଭାଇ। ସବୁ ମାନି ଯାଉଛି। ଏହାସତ୍ତ୍ୱେ ତୁ ସୁମତିକୁ ବଧୂ ହେବାକୁ ରାଜି ତ?"

"ନିଶ୍ଚୟ। ଯଦି ଭୂତ ବଦଳରେ ମଣିଷହିଁ ମୋତେ ଉପଦେଶ ଦେଇଛି, ତେବେ ତାହାତ ଆହୁରି ଭଲ କଥା। ତୁ କ'ଣ ଭୂତଠୁଁ ବେଶି ମୂଲ୍ୟବାନ ବନ୍ଧୁ ନୋହୁଁ?"

ଦୁଇ ବନ୍ଧୁ ପରସ୍ପର ଆଲିଙ୍ଗନ କଲେ।





# ଦକ୍ଷତା ଓ ନିଷ୍ଠା

ଧରଣୀ ପାଠ ପଢ଼ା ଶେଷ କରି ନିଜ ସହରକୁ ଆସିଲା । ସେଠାକାର ବିଶିଷ୍ଟ ବ୍ୟବସାୟୀ ସୁନ୍ଦରଦତ୍ତ ତାକୁ ଦୁଇଶହ ମୁଦ୍ରା ଦରମାରେ ଚାକିରି ଦେଲେ ।

ପ୍ରଥମ ତିନିମାସ ଧରଣୀ ହିସାବ ନିକାଶ କାମ ଶିଖିଲା । ତା'ପରେ ସେ ମନଦେଇ ମାସଟିଏ କାମ କରିଛି, ସୁନ୍ଦରଦତ୍ତଙ୍କ ପ୍ରତିଦ୍ୱନ୍ଦୀ ବ୍ୟବସାୟୀ ରଜନୀ ଗୁପ୍ତ ତାକୁ ଖବର ଦେଲେ: ତାଙ୍କ ପ୍ରତିଷ୍ଠାନରେ ଯୋଗ ଦେଲେ ସେ ଅଧିକା ପଚିଶ ମୁଦ୍ରା ଦରମା ଦେବେ ।

ଧରଣୀ ସୁନ୍ଦରଦତ୍ତଙ୍କ ଚାକିରି ଛାଡି ରଜନୀ ଗୁପ୍ତଙ୍କ ପ୍ରତିଷ୍ଠାନରେ ଯୋଗ ଦେଲା ।

ଦୁଇ ତିନିମାସ ପରେ ଦିନେ ଜମିଦାରଙ୍କର ଜଣେ କର୍ମଚାରୀ ତାକୁ କହିଲେ, "କେତେ-ଦରମା ପାଉଛ କହେ।?"

"ଅଢ଼େଇ ଶହ ।"

"ଆମ ଜମିଦାରଙ୍କ ସିରସ୍ତାରେ ଜଣେ ହିସାବରକ୍ଷକ ଲୋଡ଼ା । ତମେ ଯୋଗ ଦେବ? ଆଉ ପଚିଶ ଟଙ୍କା ଅଧିକ ମିଳିବ ।" କର୍ମଚାରୀ କହିଲେ ।

ଧରଣୀ ପରଦିନ ରଜନୀ ଗୁପ୍ତଙ୍କ ପ୍ରତିଷ୍ଠାନରୁ ଇସ୍ତଫା ଦେଇ ଜମିଦାରଙ୍କ ସିରସ୍ତାରେ ଯୋଗ ଦେଲା । ହିସାବ ନିକାଶ କାମରେ ଯେ ସେ ଖୁବ୍ ଦକ୍ଷ, ଏକଥା ସମସ୍ତେ ସ୍ୱୀକାର କରୁଥିଲେ ।

ତିନିମାସ ପରେ ଦିନେ ଧରଣୀ ତା' ସହପାଠୀ ରମେଶକୁ ଭେଟିଲା । ରମେଶ ବାଣିଜ୍ୟ କରି ଧନୀ ହୋଇଯାଇଥାଏ । ସେ କହିଲା, "ଧରଣୀ, ତମେ ମୋ ବେପାରରେ କିଛି ପୁଞ୍ଜି ଖଟାଇ ଜଣେ ଅଂଶୀଦାର ହୁଅ । ସେଥିରୁ ପ୍ରକୃତରେ ଲାଭ ପାଇବ । ଚାକିରିରୁ କେଉ ପଇସା ଆସିବ?"

"ରମେଶ, ମୁଁ ଶାନ୍ତିପ୍ରିୟ ଲୋକ । ନିଜେ ବେପାର କରିବା ଭଳି ତାକତ୍ ବା ବୁଦ୍ଧି ମୋର ନାହିଁ । ଚାକିରିରୁ ଯେତିକି ମିଳିଲା, ସେତିକିରେ ମୁଁ ତୁଷ୍ଟ । ଅବଶ୍ୟ ଯିଏ ବେଶି ଦେବ, ମୁଁ ତା' ପାଖକୁ ଯିବ ।"

ରମେଶ କହିଲା, "ଆଚ୍ଛା, ତମେ ମୋ ହିସାବରକ୍ଷକ ଭାବରେ ଯୋଗ ଦିଅ । ତିନିଶହ ମୁଦ୍ରା ଦରମା ।"

ଦ୍ୱିଧା ନକରି ଧରଣୀ ଜମିଦାରଙ୍କ ଚାକିରି ଛାଡ଼ି ରମେଶ ପାଖରେ ଚାକିରି କଲା ।

ମାସେ ନ ଯାଉଣୁ ରମେଶ କଳାବଜାର କରୁଥିବା ଅଭିଯୋଗରେ ଗିରଫ ହେଲା । ତା' ବ୍ୟବସାୟ ଭୁଷୁଡ଼ି ପଡ଼ିଲା । ଧରଣୀ ବେକାର ହେଲା ।

ସେ ଯାଇ ତା' ବନ୍ଧୁମାନଙ୍କୁ ଚାକିରି ଖୋଜି ଦେବାକୁ କହିଲା । ବନ୍ଧୁମାନେ ଯେଉଁଠି ତା'ପାଇଁ କହିଲେ, ସେଇଠି ଶୁଣିଲେ, "ଓ ଚଗଲା ଧରଣୀ କଥା କହୁଛ? ତାକୁ ତ ସୁଉକଟିଏ ଅଧିକା ପାଇଲେ ସିଏ ପଳେଇବ । ତାକୁ କିଏ ରଖିବ?"

ଧରଣୀ ଯାଇ ତା' ମାମୁଁଙ୍କୁ ନିଜ ହାଲ କହିଲା । ମାମୁଁ ଜମିଦାରଙ୍କର ବିଶ୍ୱସ୍ତ ଲୋକ । ସେ ଧରଣୀକୁ ଜମିଦାରଙ୍କ ପାଖକୁ ନେଇଗଲେ ଓ କହିଲେ, "ଆଜ୍ଞା, ଆପଣଙ୍କ ଚାକିରି ସେ ଛାଡ଼ିବ ନାହିଁ ବୋଲି ଲେଖିଦେବ ।"

ଜମିଦାର କହିଲେ, "ଲେଖିଦେବା ଦରକାର ନାହିଁ । ନୀରବ ନିଶ୍ଚିନ୍ତ କାମ କରିବା କେତେ ବିପଜ୍ଜନକ, ସେତିକ ସେ ଶିଖି ଯାଇଛି । ତା'ର କର୍ମଦକ୍ଷତା ଅଛି, କିନ୍ତୁ ନିଷ୍ଠା ନଥିଲା । ଆଶା କରେଁ ଏଣିକି ସେ ନିଷ୍ଠାପର ହେବ । ତା'ର ପ୍ରଥମ ଭୁଲ୍ ହୋଇଥିଲା ସୁନ୍ଦରଦତ୍ତଙ୍କ ଚାକିରି ଚଟାପଟ ଛାଡ଼ିଦେବା । କାରଣ ସେ ତାକୁ କାମ ଶିଖାଇଥିଲେ । ଅନ୍ତତଃ ବର୍ଷଟିଏ ସେ ସେଠି କାମ କରିବା ଉଚିତ ଥିଲା ।"

ପରଦିନଠାରୁ ଧରଣୀ ଜମିଦାରଙ୍କ ସିରସ୍ତାରେ ପୁନଃନିଯୁକ୍ତ ପାଇଲା ।






# ବିଷ୍ଣୁ ପୁରାଣ

ଲକ୍ଷ୍ମୀ ବେଦବତୀ ରୂପରେ ତପସ୍ୟା କରୁଥିବା ବେଳେ ରାବଣ ତାଙ୍କର କେଶ ସ୍ପର୍ଶ କରିବା ଯୋଗୁ ନିଜ ଦେହକୁ ଅପବିତ୍ର ହେଲା ଭାବି ସେ ଯୋଗ ଅଗ୍ନି ମଧ୍ୟରେ ଭସ୍ମ କରିଥିଲେ । ପରେ ସେ ଲଙ୍କାରେହିଁ ପ୍ରଥମେ ପ୍ରକଟ ହୋଇଥିଲେ ।

ଲଙ୍କାନଗର ମଧ୍ୟରେ ଏକ ସୁନ୍ଦର ସରୋବର ଥିଲା । ରାବଣ ପ୍ରତିଦିନ ସେହି ସରୋବରରେ ସ୍ନାନ କରି ଶିବଙ୍କ ପୂଜା ପାଇଁ ପଦ୍ମଫୁଲ ତୋଳେ । ଦିନେ ସେହିପରି ଫୁଲ ତୋଳୁ ତୋଳୁ ସେ ଦେଖିଲା ଗୋଟିଏ ବୃହତ୍ ପଦ୍ମଫୁଲରୁ ଆଲୋକର କିରଣ ବିଚ୍ଛୁରିତ ହୋଇ ପଡୁଛି । ସେ କୌତୁହଳବଶତଃ ପଦ୍ମଫୁଲ ନିକଟକୁ ଯାଇ ଦେଖିଲା ଶରୀରରୁ ସୁନେଲି ରଙ୍ଗର ଆଲୋକ ବିକିରଣ କରି ସେହି ପଦ୍ମ ମଧ୍ୟରେ ଶୋଇଛି ଏକ ଅପରୂପ ବାଳିକା ଶିଶୁ ।

ଠିକ୍ ସେତିକବେଳେ ଏକ ଆକାଶବାଣୀ ରାବଣ ଶୁଣିପାରିଲା; ତାହା ହେଉଛି, "ହେ ରାବଣ ଏହି କନ୍ୟା ତୁମ ଜୀବନ ଓ ଲଙ୍କା ପାଇଁ ଧୂମକେତୁ ଭାବରେହିଁ ଦେଖାଦେବ ।"

ରାବଣ ତୁରନ୍ତ ଯାଇ ରାକ୍ଷସମାନଙ୍କୁ ଆଦେଶ ଦେଲା ଶିଶୁକୁ ବଧ କରିବା ପାଇଁ । କିନ୍ତୁ ବହୁତ ପ୍ରୟାସ କରି ମଧ୍ୟ ରାକ୍ଷସମାନେ ଶିଶୁକୁ ବଧ କରିପାରିଲେ ନାହିଁ । ଯେଉଁ ଖଣ୍ଡା ନେଇ ତାକୁ ହାଣିବାକୁ ଗଲେ ସେ ଖଣ୍ଡା ଉଭାନ୍ ହୋଇଗଲା; ଯେତେବେଳେ ଶିଶୁକୁ ଅଗ୍ନିରେ



ନିକ୍ଷେପ କଲେ ଅଗ୍ନି ଶାନ୍ତ ହୋଇଗଲା । ଯେତେବେଳେ ସେମାନେ ଶିଶୁକୁ ପଥରରେ ପିଟିଦେଲେ ପଥର ଫୁଲ ହୋଇଗଲା । ତାକୁ ହିଂସ୍ରଜନ୍ତୁଙ୍କ ମୁହଁ ପାଖକୁ ପକାଇ ଦେବାରୁ ସେମାନେ କିଛି ନକରି ବରଂ ଦୂରକୁ ପଳାଇ ଯାଉଥାନ୍ତି । ଅବଶେଷରେ ବିରକ୍ତ ହୋଇ ରାକ୍ଷସମାନେ ପାଞ୍ଚଧାତୁରେ ଗଢ଼ା ଏକ ଶକ୍ତ ପେଟିକା ମଧ୍ୟରେ ଶିଶୁକନ୍ୟାକୁ ରଖି ସମୁଦ୍ରରେ ନିକ୍ଷେପ କଲେ । ସେହି ପେଟିକାଟି ସମୁଦ୍ରରେ ବହୁ ଦୂରକୁ ଭାସି ଭାସି ଯାଇ ପୁଣି ଏକ ନଦୀ ମଧ୍ୟରେ ପ୍ରବେଶ କରି ଭାସି ଭାସି ମିଥିଳାପୁରରେ ପହଞ୍ଚିଲା । ସେଠାରେ ପୃଥିବୀ ଭିତରେ ମାଟିରେ ଲୁଚି ରହିଲା ।

ସେହି ସମୟରେ ମିଥିଳାର ରାଜା ଜନକ ଏକ ଯଜ୍ଞ କରିବା ଉଦ୍ଦେଶ୍ୟରେ ନିଜେ ଯଜ୍ଞକ୍ଷେତ୍ରକୁ ହଳ କରୁଥା'ନ୍ତି ମାଟି ସମତଳ କରିବା ପାଇଁ । ହଳର ଅଗ୍ରଭାଗଟି ଏଇ ପେଟିକାରେ ବାଜି ଶବ୍ଦ ହେଲା । ଜନକ କୌତୁହଳବଶତଃ ହଳ ବନ୍ଦ କରି ମାଟି ଖୋଳି ପେଟିକାଟି ପାଇଲେ । ଖୋଲି ଦେଖିଲେ ଏକ ଅପୂର୍ବ ସୁନ୍ଦର ବାଳିକା ଶିଶୁ । ପୃଥିବୀ ମାତାଙ୍କର କୃପାରୁ କନ୍ୟାଟିକୁ ପାଇଛନ୍ତି ବୋଲି ସେ ଭାବିଲେ ଓ ଆନନ୍ଦରେ ଶିଶୁଟିକୁ କୋଳକୁ ନେଲେ ।

ହଳର ଅଗ୍ରଭାଗକୁ ସୀତା କୁହାଯାଏ । ତେଣୁ ସେ ଶିଶୁର ନାମ ରଖିଲେ ସୀତା । ଜନକଙ୍କ ଝିଅ ବୋଲି ତାଙ୍କର ଅନ୍ୟ ନାମ ଜାନକୀ । ପୃଥିବୀରୁ ବାହାରିଛନ୍ତି ବୋଲି ତାଙ୍କର ଅନ୍ୟ ଏକ ନାମ ହେଲା ଭୂଜାତା ।

ଜନକ ତାଙ୍କୁ ଅତି ଆଦରର ସହ ଲାଳନ-ପାଳନ କରୁଥା'ନ୍ତି । ଦିନକୁ ଦିନ ସେ ଚନ୍ଦ୍ରକଳା ପରି ବଢ଼ିବାକୁ ଲାଗିଲେ । ଦିନେ ବାଳିକା ସୀତା ତାଙ୍କ ସଖୀମାନଙ୍କ ସହ ପେଣ୍ଡୁ ଖେଳୁଥା'ନ୍ତି । ଖେଳୁ ଖେଳୁ ପେଣ୍ଡୁଟି ଶିବଧନୁ ତଳକୁ ଗଡ଼ିଗଲା । ସୀତା ତତକ୍ଷଣାତ୍ ଆସି ଶିବଧନୁକୁ ବାମହାତରେ ଟେକି ନେଇ ପେଣ୍ଡୁଟି ଗୋଟାଇ ଆଣିଲେ । ପରେ ଶିବଧନୁକୁ ଧରି ଖେଳିବାକୁ ଲାଗିଲେ । ବାଳିକାର ଏହି ଅଦ୍ଭୁତ ଶକ୍ତି ଦେଖି ଜନକ



ଓ ଅନ୍ୟମାନେ ଖୁବ୍ ଆଶ୍ଚର୍ଯ୍ୟ ହେଲେ । କାରଣ ଶିବଧନୁକୁ କେବଳ ଠେଲିବା ପାଇଁ ଛନିଶହ ଶକ୍ତିଶାଳୀ ବ୍ୟକ୍ତି ନିଯୁକ୍ତ ହେଉଥିଲେ, ଏହି ଧନୁ ଥିଲା ଶିବଙ୍କ ହାତରେ ଯେତେବେଳେ ସେ ତ୍ରିପୁରାସୁରକୁ ବଧ କରିଥିଲେ । ଏହି ଧନୁକୁ ପ୍ରତ୍ୟହ ପୂଜା କରାଯାଉଥିଲା । ସେହି ଧନୁ ଉଠାଇବା ଘଟଣା ପରେ ଜନକ ଭାବିଲେ, "ଏ ଧନୁକୁ ଯିଏ ଅନାୟାସରେ ଉଠାଇ ପାରୁଛି ସେ ସାଧାରଣ ଝିଅ ନୁହେଁ । ତେଣୁ ଏହି ଧନୁରେ ଯେଉଁ ପୁରୁଷ ବାଣ ଖଞ୍ଜି ପାରିବ ସେହିଁ ସୀତା ପାଇଁ ଯୋଗ୍ୟ ବର ହେବ ।" ତେଣୁ ସୀତାଙ୍କ ସ୍ୱୟମ୍ବରରେ ଏହି ମର୍ମରେ ସେ ନିମନ୍ତ୍ରିତ ରାଜାମାନଙ୍କ ସମ୍ମୁଖରେ ଏକ ଘୋଷଣା କଲେ ।

ଏଣେ କ'ଣ ହୋଇଥାଏ ନା ଅସୁରଙ୍କ ଦୌରାତ୍ମ୍ୟରୁ ଯଜ୍ଞ ରକ୍ଷା କରିବା ପାଇଁ ବିଶ୍ୱାମିତ୍ର ରାଜା ଦଶରଥଙ୍କ ପାଖକୁ ଯାଇ ଅନୁରୋଧ କଲେ ରାମଲକ୍ଷ୍ମଣଙ୍କୁ ପଠାଇବା ପାଇଁ । କିନ୍ତୁ ଦଶରଥ କହିଲେ, "ମହର୍ଷି, ଏମାନେ ଛୋଟ ଛୋଟ ବାଳକ ମାତ୍ର । ଧନୁର୍ବିଦ୍ୟା ଏବେ ଶିଖି ନାହାନ୍ତି । ସେମାନେ କ'ଣ ଯଜ୍ଞରକ୍ଷା କରିବେ ? ବରଂ ଆପଣ ଆବଶ୍ୟକୀୟ ସୈନ୍ୟ ନେଇଯାନ୍ତୁ ଅଥବା ମୁଁ ନିଜେ ଯାଇ ଯଜ୍ଞରକ୍ଷା କରିବି ।"

ବିଶ୍ୱାମିତ୍ର ପ୍ରଥମେ ରାଗିଗଲେ ଓ ପରେ ଶାନ୍ତସ୍ୱରରେ କହିଲେ, "ସେଇଥିପାଇଁ ତ ସେ ଦୁହିଁଙ୍କୁ ନେବାକୁ ମୁଁ ଆସିଛି । ନାନା ପ୍ରକାର ଧନୁର୍ବିଦ୍ୟାରେ ମୁଁ ହିଁ ସେମାନଙ୍କୁ ନିପୁଣ କରିଦେବି । ଆପଣ ଚିନ୍ତା କରନ୍ତୁ ନାହିଁ ।"

ବଶିଷ୍ଠ ମଧ୍ୟ ହସି ହସି କହିଲେ, "ବିଶ୍ୱାମିତ୍ର ଯାହା କହୁଛନ୍ତି ଠିକ୍ । ରାଜକୁମାରମାନଙ୍କୁ ପଠାଇ ଦିଅନ୍ତୁ, ବିଶ୍ୱାମିତ୍ରଙ୍କ ଦ୍ୱାରା ସୁରକ୍ଷିତ ହୋଇଥିଲେ ତ୍ରିଭୁବନରେ କୌଣସି ଶକ୍ତି ସେମାନଙ୍କର କୌଣସି କ୍ଷତି କରିପାରିବ ନାହିଁ । ନିର୍ଭୟରେ ପଠାଇ ଦିଅନ୍ତୁ ।"

ରାଜା ଦଶରଥ ନିଜର ଅନିଚ୍ଛା ସତ୍ତ୍ୱେ ଋଷିମାନଙ୍କ ଇଚ୍ଛା ପୂରଣ କରିବାକୁ ଯାଇ କୁମାର ଦୁହିଁଙ୍କୁ ବିଶ୍ୱାମିତ୍ରଙ୍କୁ ସମର୍ପଣ କଲେ । ଧନୁର୍ଦ୍ଧାରୀ ରାମଲକ୍ଷ୍ମଣ ବିଶ୍ୱାମିତ୍ର ମୁନିଙ୍କର ଅନୁଗମନ କଲେ ।



ରାସ୍ତାରେ ଯାଉଥିବାବେଳେ ବିଶ୍ୱାମିତ୍ର ଧନୁର୍ବିଦ୍ୟାର ଗୁଢ଼ ରହସ୍ୟ ସବୁ କୁମାର ଦୁହିଁଙ୍କୁ ଶିକ୍ଷା ଦେଲେ । ସେମାନେ ସେଥିରେ ପାରଙ୍ଗମ ହୋଇ ଉଠିଲେ ।

ବିଶ୍ୱାମିତ୍ର ତାଙ୍କର ସିଦ୍ଧାଶ୍ରମରେ ଯଜ୍ଞ ପାଇଁ ପ୍ରସ୍ତୁତ ହେଲେ । ତାଡ଼କା ନାମକ ରାକ୍ଷସୀ ଯଜ୍ଞରେ ନାନା ବିଘ୍ନ ଘଟାଉଥାଏ । ମୁନିଙ୍କ ଆଦେଶରେ ରାମଲକ୍ଷ୍ମଣ ରାକ୍ଷସୀକୁ ବଧ କଲେ । ବିଶ୍ୱାମିତ୍ର ରାମଲକ୍ଷ୍ମଣଙ୍କ ଧନୁର୍ବିଦ୍ୟା ଓ କୌଶଳର ପ୍ରଶଂସା କଲେ । ଯଜ୍ଞ ଆରମ୍ଭ ହେଲା ଓ ରାମଲକ୍ଷ୍ମଣ ଧନୁର୍ବାଣ ଧାରଣ କରି ଯଜ୍ଞ ରକ୍ଷା କଲେ । ଯଜ୍ଞରେ ବିଘ୍ନ ଘଟାଉଥିବା ସୁବାହୁ ନାମକ ରାକ୍ଷସକୁ ରାମ ବଧ କଲେ ଓ ମାରୀଚ ନାମକ ରାକ୍ଷସକୁ ବହୁ ଦୂରକୁ ଉଡ଼ାଇ ନେଇ ମହାସମୁଦ୍ରରେ ନିକ୍ଷେପ କଲେ ।

ବିନା ବାଧାରେ ଯଜ୍ଞ ଶେଷ ହେଲା । ଯଜ୍ଞରେ ଶେଷ ଆହୁତି ଦେବାପରେ ସେଥିରୁ ବାହାରିଲା ଏକ ଦିବ୍ୟାସ୍ତ୍ର ଯାହା ବିଶ୍ୱାମିତ୍ର ରାମଙ୍କ ହାତରେ ଦେଇ କହିଲେ, "ଏହା ତୁମ ପାଇଁ ଉଦ୍ଦିଷ୍ଟ, ଅତ୍ୟନ୍ତ ଶକ୍ତିଶାଳୀ । ତୁମ ଶତ୍ରୁର ମୁଣ୍ଡ କାଟିବା ପରେ ପୁଣି ତାହା ତୁମ ହାତକୁ ଲେଉଟି ଆସିବ ।" ରାମ ଭକ୍ତିପୂର୍ବକ ସେହି ଦିବ୍ୟ ବାଣକୁ ଗ୍ରହଣ କଲେ ।

ପୁଣି ବିଶ୍ୱାମିତ୍ର କହିଲେ, "ହେ ରାମ ଲକ୍ଷ୍ମଣ ତୁମମାନଙ୍କୁ ମୁଁ ମୋର ସମସ୍ତ ବିଦ୍ୟା ଶିକ୍ଷା ଦେଇଛି । ତୁମର ଗୁରୁ ଭାବରେ ସମସ୍ତେ ମୋତେ ମନେ ରଖିବେ । ସେଥିଯୋଗୁ ମୁଁ ଅତ୍ୟନ୍ତ ଆନନ୍ଦିତ ।"

ରାମ ବିନମ୍ର ଭାବରେ କହିଲେ, "ଆପଣ ଯେ ଦୟାକରି ଏସବୁ ଧନୁର୍ବିଦ୍ୟା ଆମକୁ ଶିଖାଇଛନ୍ତି ସେଥିପାଇଁ ଆମେ ଧନ୍ୟ ।"

ସିଦ୍ଧାଶ୍ରମରେ ରହି ଦୁହିଁଙ୍କର ସୌନ୍ଦର୍ଯ୍ୟ ଯେପରି ଅଧିକରୁ ଅଧିକ ବଢୁଥାଏ । ରାମଙ୍କର ବିଶାଳ କମଳ ନେତ୍ରରୁ ଯେପରି ଝରି ପଡୁଥିଲା ଶାନ୍ତିର ଚନ୍ଦ୍ରକିରଣ । କିଛିଦିନ ପରେ ବିଶ୍ୱାମିତ୍ର ଦୁଇ କୁମାରଙ୍କୁ ନେଇ ମିଥିଳା ଯାତ୍ରା କଲେ । ରାସ୍ତାରେ ଗୌତମ ମୁନିଙ୍କ ଆଶ୍ରମ ନିକଟରେ ରାମଙ୍କ ପାଦସ୍ପର୍ଶରେ ପଥରଟିଏ ନାରୀରୂପ ଧାରଣ କଲା । ସେ ଥିଲେ ଗୌତମ



ମୁନିଙ୍କ ସ୍ତ୍ରୀ ଅହଲ୍ୟା । ଗୌତମଙ୍କ ଅଭିଶାପ ଫଳରେ ସେ ଏପରି ହୋଇଥିଲେ । ସେତିକି-ବେଳେ ନିଜେ ଗୌତମ ତପସ୍ୟା ଶେଷ କରି ସେଠାରେ ପହଞ୍ଚିଲେ ଓ ଆନନ୍ଦ ହୋଇ କହିଲେ, "ତମରି ପାଦସ୍ପର୍ଶରେ ମୋର ପତ୍ନୀ ଅହଲ୍ୟା ପୁନର୍ଜୀବନ ଲାଭ କଲା । ତୁମେହିଁ ପରମ ପ୍ରଭୁଙ୍କର ଅବତାର ଦିବ୍ୟପୁରୁଷ ରାମ ।"

ରାମ କିନ୍ତୁ ବିନମ୍ରତା ସହିତ କହିଲେ, "ମୋର ଏଥିରେ କ'ଣ କରିବାର ଥିଲା । ତାଙ୍କର ଅଭିଶାପର ସମୟ ଶେଷ ହେବାରୁ ସେ ପାଷାଣତ୍ୱରୁ ମୁକ୍ତି ପାଇଲେ ।" ଗୌତମ ମୁନି ଓ ଅହଲ୍ୟା ସେଦିନ ରାମଲକ୍ଷ୍ମଣ ଓ ବିଶ୍ୱାମିତ୍ରଙ୍କୁ ନିଜ ଆଶ୍ରମକୁ ନେଇ ଅତିଥି-ସତ୍କାର କଲେ ।

ଗୌତମ ଋଷିଙ୍କ ପୁଅ ଶତାନନ୍ଦ ଥିଲେ ଜନକଙ୍କର ରାଜ-ପୁରୋହିତ । ସେ ସୀତାଙ୍କ ସ୍ୱୟମ୍ବର ସକାଶେ ସବୁ ଋଷିମୁନିଙ୍କୁ ନିମନ୍ତ୍ରଣ କରିବାକୁ ଆସିଥିଲେ । ମାର୍ଗରେ ବିଶ୍ୱାମିତ୍ରଙ୍କ ସହିତ ଦେଖା ହେବାରୁ ସମସ୍ତେ ମିଥିଳା ଯାତ୍ରା କଲେ ।

କିଛିଦିନ ପରେ ସେମାନେ ମିଥିଳାରେ ପହଞ୍ଚିଲେ । ସେତେବେଳେ ସୀତା ଓ ଜନକଙ୍କ କନ୍ୟା ଊର୍ମିଳା ଉଦ୍ୟାନରେ ବିହାର କରୁଥିଲେ । ସେହି ଉଦ୍ୟାନ ନିକଟରେହିଁ ରାମ ଓ ଲକ୍ଷ୍ମଣ ଯାଉଥିଲେ । ହଠାତ୍ ସୀତା ଓ ରାମଙ୍କର ଏବଂ ଲକ୍ଷ୍ମଣ ଓ ଊର୍ମିଳାଙ୍କର ଦୃଷ୍ଟି ବିନିମୟ ହେଲା । ପରସ୍ପର ପରସ୍ପରଙ୍କୁ ଆଶ୍ଚର୍ଯ୍ୟ ହୋଇ ଚାହିଁଥା'ନ୍ତି; ପରେ ସେମାନେ ନିଜ ବାଟରେ ଚାଲିଗଲେ ।

ତା'ପରେ ସ୍ୱୟମ୍ବର ସଭାରେ ସମସ୍ତେ ଉପସ୍ଥିତ ଥା'ନ୍ତି । ଜଣକ ପରେ ଜଣେ ରାଜା ଧନୁଟିକୁ ଉଠାଇବାକୁ ଚେଷ୍ଟା କରି ମଧ୍ୟ ପାରିଲେ ନାହିଁ । ଶେଷରେ ସବୁ ରାଜା ମିଳି ମଧ୍ୟ ଉଠାଇ ପାରିଲେ ନାହିଁ । ଏସବୁ ଦେଖି ରାଜା ଜନକ ଅତ୍ୟନ୍ତ ଚିନ୍ତିତ ହେଲେ । ସେ ଦୁଃଖ ଓ ରାଗରେ ଘୋଷଣା କଲେ, "ଯଦି ମୁଁ ଜାଣିଥା'ନ୍ତି ଯେ ବସୁନ୍ଧରା ବୀରହୀନ ବୋଲି ମୁଁ ସୀତା ସ୍ୱୟମ୍ବର ପାଇଁ ଏପରି ଏକ ସର୍ତ୍ତ



ରଖି ନଥା'ନ୍ତି ।" ଜନକଙ୍କର ଏହି ଘୋଷଣାରେ କେହି କିଛି କହିଲେ ନାହିଁ । କିନ୍ତୁ ଲକ୍ଷ୍ମଣ ଉଠିପଡି କହିଲେ, "ଏପରି କହି ଆପଣ ରାମଙ୍କର ଅପମାନ କରୁଛନ୍ତି ।"

ତା'ପରେ ଜନକଙ୍କ ଅନୁରୋଧ ଓ ଗୁରୁଙ୍କ ଆଦେଶ ନେଇ ବିନମ୍ରତାର ମୂର୍ତ୍ତି, ଶାନ୍ତ, ଧୀର, ଶ୍ରୀରାମଚନ୍ଦ୍ର ଧୀରେ ଧୀରେ ଶିବଧନୁ ନିକଟକୁ ଗଲେ । ପ୍ରଥମେ ସେ ଧନୁକୁ ପ୍ରଣାମ କଲେ ଓ ଅବଲୀଳାକ୍ରମେ ଧନୁକୁ ଗୋଟିଏ ହାତରେ ଉଠାଇ ନେଲେ । ତା'ପରେ ଧନୁ ଉପରେ ବାଣ ରଖିବା ପାଇଁ ସେ ଚେଷ୍ଟା କରିବା ମାତ୍ରେ ତାହା ଭୟଙ୍କର ଶବ୍ଦ କରି ଭାଙ୍ଗିଗଲା । ସମସ୍ତେ ଖୁସି ହେଲେ । ଜନକଙ୍କର ଆନନ୍ଦ କହିଲେ ନ ସରେ । ରାମଙ୍କର ରୂପ, ଗୁଣ ଓ ଶକ୍ତିରେ ମୁଗ୍ଧ ହୋଇ ଜନକ ତାଙ୍କୁ ଆଲିଙ୍ଗନ କଲେ । ସୀତାଙ୍କ ହୃଦୟରେ ରାମଙ୍କର ରୂପ ଆଗରୁ ଆଙ୍କି ହୋଇଥିଲା । ଏବେ ଧନୁ ଭାଙ୍ଗିବା ଦ୍ୱାରା ସୀତା ଆଶ୍ୱସ୍ତ ହେଲେ ।

ଧନୁ ଭାଙ୍ଗିବା ଯୋଗୁ ଉତ୍ପନ୍ନ ହୋଇଥିବା ଭୟଙ୍କର ଶବ୍ଦରେ ମହେନ୍ଦ୍ର ପର୍ବତ ଉପରେ ତପସ୍ୟା କରୁଥିବା ପରଶୁରାମଙ୍କର ଧ୍ୟାନ ଭଙ୍ଗ ହେଲା । ସେ ନିଜର ତପସ୍ୟା ବଳରେ ଜାଣିପାରିଲେ ଯେ ଏହି ଶବ୍ଦ ଶିବଧନୁ ଭଗ୍ନ ହେବା ଯୋଗୁ ଉତ୍ପନ୍ନ ହୋଇଛି । କିଏ ଏପରି କଲା ବୋଲି ସେ ରାଗରେ ଥରହର ହେଲେ । ହଠାତ୍ ତାଙ୍କର ମନେ ପଡ଼ିଲା ଶ୍ରୀବିଷ୍ଣୁଙ୍କ କଥା । ତଥାପି ସନ୍ଦେହମୋଚନ ପାଇଁ ସେ ରାମଙ୍କୁ ଦେଖିବାକୁ ଆସିଲେ ।

ଏଣେ ମିଥିଳାରେ ଧନୁର୍ଭଙ୍ଗ ପରେ ସୀତା ରାମଙ୍କ ଗଳାରେ ବରଣମାଳା ଦେଲେ । ଏ ଖବର ଦଶରଥଙ୍କ ପାଖକୁ ପଠାଗଲା । ତାଙ୍କର ତ ଆନନ୍ଦ କହିଲେ ନ ସରେ । ସେ ଅନ୍ୟ ଦୁଇ ପୁଅ, ବଶିଷ୍ଠ ଓ ପାରିଷଦବର୍ଗଙ୍କୁ ନେଇ ମିଥିଳାପୁରରେ ପହଞ୍ଚିଲେ । ସେଠାରେ ରାମଙ୍କ ସହିତ ସୀତାଙ୍କର ବିବାହ ମହା ସମାରୋହରେ ସମ୍ପନ୍ନ ହେଲା । ସେହି ମଣ୍ଡପରେ ଲକ୍ଷ୍ମଣଙ୍କ ସହିତ ଜନକଙ୍କ କନ୍ୟା ଉର୍ମିଳାଙ୍କର ବିବାହ ହେଲା । ତା'ପରେ ଜନକଙ୍କ ସାନଭାଇଙ୍କ

ଦୁଇଝିଅ ମାଣ୍ଡବୀ ଓ ଶ୍ରୁତକୀର୍ତ୍ତିଙ୍କ ସହ ଯଥାକ୍ରମେ ଭରତ ଓ ଶତ୍ରୁଘ୍ନଙ୍କର ବିବାହ ସମ୍ପନ୍ନ ହେଲା ।

ତା'ପରେ ଦଶରଥ ବହୁତ ହର୍ଷ ଓ ଉଲ୍ଲାସର ସହିତ ପୁତ୍ରମାନଙ୍କୁ ଓ ପୁତ୍ରବଧୂମାନଙ୍କୁ ନେଇ ଜନକଙ୍କଠାରୁ ବିଦାୟ ନେଇ ଅଯୋଧ୍ୟା ଅଭିମୁଖେ ଯାତ୍ରା କଲେ । ରାସ୍ତାରେ ଝଡ଼ ପରି ଦେଖାଦେଲେ ପରଶୁରାମ । ସର୍ବଦା କ୍ଷତ୍ରିୟ-ମାନଙ୍କ ପ୍ରତି କ୍ରୋଧରେ ଜଳୁଥିବା ପର୍ଶୁରାମ ପ୍ରଥମେ ପ୍ରଶ୍ନ କଲେ, "ଶିବଧନୁ ଭାଙ୍ଗିଥିବା ଅପରାଧୀ କିଏ ?" ରାଜା ଦଶରଥ ତାଙ୍କର ଭୟଙ୍କର ମୂର୍ତ୍ତି ଦେଖି ରଥରୁ ଓହ୍ଲାଇ ପଡ଼ି ତାଙ୍କର ଚରଣବନ୍ଦନା କରି କହିଲେ, "ରାମ ବାଳକ ମାତ୍ର । ତା'ର ଅପରାଧ ମନରେ ଧରନ୍ତୁ ନାହିଁ । ଯାହା ଶାସ୍ତି ବା ଅଭିଶାପ ଦେବାର ମୋତେ ଦିଅନ୍ତୁ ।" କିନ୍ତୁ ସେ କି ଶୁଣିବା ଲୋକ । ସେ ଦଶରଥଙ୍କର ସମସ୍ତ କାକୁତିମିନତିକୁ ହେୟଜ୍ଞାନ କରି ରାମଙ୍କୁ ପଚାରିଲେ, "ତମେ ନା ଶିବଧନୁ ଭାଙ୍ଗି ମୋର ଗୁରୁଙ୍କୁ ଅପମାନ କରିଛ ? ଏବେ ମୋ ଧନୁରେ ଗୁଣ ଦେଇ ପାରିବ ?" ଏତିକି କହି ସେ ନିଜ ଧନୁ ରାମଙ୍କୁ ଦେଲେ ।

ରାମ ଅତି ଧୀର ଭାବରେ ଧନୁ ଗ୍ରହଣ କଲେ । ଧନୁ ସ୍ପର୍ଶ କରିବା ମାତ୍ରେ ପର୍ଶୁରାମଙ୍କର ବିଷ୍ଣୁକଳା ରାମଙ୍କ ଦେହରେ ଲୀନ ହୋଇଗଲା । ତା'ପରେ ରାମ ଅନାୟାସରେ ଧନୁରେ ଗୁଣ ଦେଲେ । ଏକଥା ଦେଖି ପର୍ଶୁରାମ ଓ ଅନ୍ୟମାନେ ଚମତ୍କୃତ ହେଲେ । ପର୍ଶୁରାମ ବୁଝିପାରିଲେ ଏବେ ପୃଥିବୀ ଉପରେ ତାଙ୍କର ଭୂମିକା ଶେଷ ହୋଇଛି । ସେ କ୍ରୋଧ ଶାନ୍ତ କରି ରାମଙ୍କଠାରୁ କ୍ଷମା ଗୃହିଁଲେ । ତା'ପରେ ପୁଣି ସେ ମହେନ୍ଦ୍ର ପର୍ବତକୁ ଫେରିଗଲେ ତପସ୍ୟା ପାଇଁ ।

ରାମ ତା'ପରେ ପିତା ଦଶରଥ, ଭାତୃଗଣ ଓ ବଟୁଗଣଙ୍କ ସହିତ ମହା ଉଲ୍ଲାସରେ ଅଯୋଧ୍ୟା ଯାତ୍ରା କଲେ ।





# ଈର୍ଷ୍ୟାର ଫଳ

ପାରସ୍ୟ ଦେଶର ଗୋଟିଏ ନଗରୀରେ ଅବୁ ହୁମ୍ମାମ ନାମରେ ଜଣେ ସୌଦାଗର ବାସ କରୁଥିଲେ । ସେ ଅତ୍ୟନ୍ତ ଭଦ୍ର ଓ ମଧୁରଭାଷୀ ଥିଲେ । ସେଥିପାଇଁ ସେ ଅତ୍ୟନ୍ତ ଲୋକପ୍ରିୟ ଥିଲେ । ଅବୁଙ୍କର ଧନ ଓ ଲୋକପ୍ରିୟତା ଦେଖି ରାଜା ଈର୍ଷ୍ୟାନ୍ୱିତ ହେଲେ । ସେକଥା ଜାଣିପାରି ଅବୁ ନିଜ ଦେଶ ଛାଡ଼ି ପଡ଼ୋଶୀ ରାଜ୍ୟର ରାଜଧାନୀକୁ ଯାଇ ବସବାସ କରି ରହିଲେ । ସେ ଦେଶର ରାଜା ଥିଲେ ଅଲ୍ଲାନ ଶାହା । ସେ ଯୁବକ ହେଲେ ମଧ୍ୟ ବିଚକ୍ଷଣ ଥିଲେ ।

ଅଲ୍ଲାନ ଶାହା ପୂର୍ବରୁ ଅବୁଙ୍କ ବିଷୟରେ ଶୁଣିଥିଲେ ତେଣୁ ତାଙ୍କ ପାଖକୁ ଖବର ପଠାଇଲେ ଦେଖା କରିବା ସକାଶେ । ଯଥା ସମୟରେ ଅବୁ ଅନେକ ଉପହାର ଧରି ରାଜାଙ୍କ ସହିତ ଦେଖା କଲେ । ଅବୁଙ୍କର ମଧୁର ବ୍ୟବହାର, ନମ୍ରତା ଓ ଗଭୀର ବୁଦ୍ଧି ଦେଖି ରାଜା ମୁଗ୍ଧ ହେଲେ ଓ ପ୍ରତିଦିନ ଥରେ ଦେଖା କରିବା ପାଇଁ ତାଙ୍କୁ ଅନୁରୋଧ କଲେ ।

ଅବୁ ମଥା ତଳକୁ କରି କହିଲେ, "ଜାହାଁପନା, ରାଜାମାନଙ୍କ ସହିତ ସବୁବେଳେ ରହିବା ଭଲ ନୁହେଁ । ତଦ୍ୱାରା ଅକାରଣରେ ଅନ୍ୟମାନେ ଈର୍ଷ୍ୟା କରିବେ ।"

ରାଜା କିନ୍ତୁ ସେକଥା ନଶୁଣି ଅବୁଙ୍କ ସହ ଘନିଷ୍ଠ ସମ୍ପର୍କ ରଖିଲେ । ଯେତେବେଳେ ଯାହା ସମସ୍ୟା ଦେଖା ଦିଏ ସେ ତିନିଜଣ ଉଜୀର୍‌ଙ୍କ ସହ ଆଲୋଚନା ନ କରି ଅବୁଙ୍କ ସହ ଆଲୋଚନା କରନ୍ତି । ତଦ୍ୱାରା ସେମାନେ ଅତ୍ୟନ୍ତ ଈର୍ଷ୍ୟାନ୍ୱିତ ହେଲେ ।

ଦିନେ ତିନିଜଣ ଉଜୀର ଏକାଠି ବସି ଏ ବିଷୟରେ ଆଲୋଚନା କଲେ । ଜଣେ କହିଲେ, "ଦେଖ ଅବୁ ଗୋଟାଏ ମିଥ୍ୟା ଜାଲ



ଫାନ୍ଦ ରାଜାଙ୍କୁ ଅକ୍ତିଆର୍ କରିଛି । ଆମେ ଏବେ କ'ଣ କରିବା ?"

ତା'ପରେ ଅନ୍ୟ ଜଣେ ଉଜୀର୍ କହିଲେ, "ଏସବୁ ନାଟକ ଶେଷ କରିବାର ଉପାୟ ମୁଁ ଜାଣେ । ଜାଣିଛ କି ତୁର୍କୀ ଦେଶର ରାଜକୁମାରୀ ପରୀ ଭଳି ସୁନ୍ଦରୀ । ରାଜାମାନେ ତାଙ୍କୁ ବିବାହ କରିବା ପାଇଁ ପ୍ରସ୍ତାବ ଦେଇ ଦୂତ ପଠାନ୍ତି । କିନ୍ତୁ ଦୂତ କେବେ ମଧ୍ୟ ଫେରି ଆସେ ନାହିଁ । ଶୁଣାଯାଏ ତୁର୍କୀର ରାଜା ଦୂତମାନଙ୍କୁ ମାରି ଦିଅନ୍ତି । ଆମ ରାଜା ତ ଅବିବାହିତ । ଚାଲ ଆମେ ରାଜକୁମାରୀଙ୍କ ସୌନ୍ଦର୍ଯ୍ୟର ଏତେ ପ୍ରଶଂସା କରିବା ଯେ ଆମ ରାଜାଙ୍କର ଇଚ୍ଛା ହେବ ତାଙ୍କୁ ବିବାହ କରିବା ପାଇଁ । ସେତେବେଳେ ଆମେ ପ୍ରସ୍ତାବ ଦେବା ଯେ ଏ କାମ ପାଇଁ ଅବୁହିଁ ଦୂତ ହୋଇ ଯିବାକୁ ଯୋଗ୍ୟ । ଆଉ ଥରେ ସେଠାକୁ ଗଲେ ଅବୁ ପୁନର୍ବାର ଫେରି ଆସିବ ନାହିଁ ।"

"ସତ କଥା । ଅବୁକୁ ଚିରକାଳ ପାଇଁ ଏଠାରୁ ହଟାଇ ଦେବାର ଏଇଟା ଚମତ୍କାର ଉପାୟ ।" ଅନ୍ୟ ଦୁଇ ଉଜୀର କହିଲେ ।

ଯୋଜନା ଅନୁସାରେ ତିନି ଉଜୀର ନିଜ ନିଜ ସମୟରେ ରାଜାଙ୍କୁ ତୁର୍କୀ ଦେଶର ରାଜକନ୍ୟାଙ୍କ ସୌନ୍ଦର୍ଯ୍ୟ ବିଷୟରେ କହିଲେ । କିଛିଦିନ ପରେ ସତକୁ ସତ ରାଜାଙ୍କ ମନରେ ରାଜକୁମାରୀଙ୍କୁ ବିବାହ କରିବାକୁ ଇଚ୍ଛା ହେଲା ।

ଦିନେ ରାଜା ସେମାନଙ୍କୁ କହିଲେ, "ତମେମାନେ କଥା ସବୁ ଚମତ୍କାର ଭାବରେ କହୁଛ । କିନ୍ତୁ ତୁର୍କୀ ଦେଶକୁ ପ୍ରସ୍ତାବ ନେଇ ଯିବ କିଏ ?"

"ଜାହାଁପନା, ଏପରି କାର୍ଯ୍ୟର ସାଫଲ୍ୟ ନିର୍ଭର କରୁଛି ଦୂତର ବୁଦ୍ଧି ଓ କଥା କହିବାର କୌଶଳ ଉପରେ । ତା' ଛଡ଼ା ତା'ର ଥିବ ନମ୍ରତା ଓ ମଧୁର ବ୍ୟବହାର ।" ଜଣେ ଉଜୀର କହିଲେ ।

"ଠିକ୍ କଥା ହଜୁର୍ । ଆଉ ଏସବୁ ଗୁଣ କେବଳ ଅବୁଙ୍କଠାରେହିଁ ଅଛି । ତେଣୁ ତାଙ୍କୁହିଁ ପଠାନ୍ତୁ ।" ଅନ୍ୟ ଜଣେ ଉଜୀର ପ୍ରସ୍ତାବ ଦେଲେ ।

ରାଜା ଉଜୀରମାନଙ୍କ କଥା ମାନି ଅବୁଙ୍କୁ ସେହି କାମ ଦେଇ ତୁର୍କୀ ପଠାଇଲେ ।

ତୁର୍କୀର ରାଜା ଅବୁଙ୍କୁ ଯଥାବିଧି ଆଦର ସତ୍କାର କରି କହିଲେ, "ପ୍ରଥମେ ତୁମେ ଯାଇ ମୋ ଝିଅକୁ ଦେଖ । ତା'ପରେ ଆମେ କଥାବାର୍ତ୍ତା ହେବା ।"

ଜଣେ ରାଜକର୍ମଚାରୀ ଅବୁଙ୍କୁ ଅନ୍ଦର ମହଲକୁ ନେଇଗଲେ । ସେ ଥରେ ରାଜକୁମାରୀଙ୍କୁ ଦେଖି ଦୃଷ୍ଟି ତଳକୁ କରି ବସିଲେ । ରାଜକୁମାରୀଙ୍କ ପାଖରେ ରେଶମୀ ଚଦର ଢଙ୍କା କେତେକ ଥାଳୀ ଥିଲା । ରାଜକୁମାରୀ ରେଶମୀ ଚଦର ଖୋଲି ଦେଇ କହିଲେ, "ଏସବୁ ଜିନିଷ ଆପଣଙ୍କ ପାଇଁ ଉପହାର ।"



ଅବୁ କିଛି କଥା କହିଲେ ନାହିଁ ନା ମଥା ଟେକି ଉପରକୁ ମଧ୍ୟ ଚାହିଁଲେ ନାହିଁ । କିଛି ସମୟ ପରେ ରାଜକୁମାରୀ ନିଜ ଆସନ ଉପରୁ ଉଠି ଭିତରକୁ ଚାଲିଗଲେ ।

ଯେତେବେଳେ ଅବୁ ରାଜାଙ୍କ ସହିତ ଦେଖା କରିବାକୁ ଗଲେ, ରାଜା କହିଲେ, "ମୋ ଝିଅ କହୁଛି ତମେ ଅନ୍ଧ, କାଲ ଓ ମୂକ । କଥା କ'ଣ ?"

"ହଜୁର୍ ଆମ ରାଜା ଆପଣଙ୍କ ଝିଅଙ୍କୁ ବିବାହ କରିବା ପାଇଁ ଆପଣଙ୍କ ନିକଟକୁ ପ୍ରସ୍ତାବ ପଠାଇଛନ୍ତି । ସେ ସମ୍ପର୍କରେ ଆପଣଙ୍କ ଉତ୍ତର କ'ଣ କୁହନ୍ତୁ । ରାଜକୁମାରୀଙ୍କ ସୌନ୍ଦର୍ଯ୍ୟକୁ ପରଖିବା ପାଇଁ ତ ସେ ମୋତେ ଆଦେଶ ଦେଇ ନାହାନ୍ତି । ତା' ଛଡ଼ା କୌଣସି କୁମାରୀଙ୍କୁ ବାରମ୍ବାର ଚାହିଁ ଦେଖିବା, ଅସୁନ୍ଦର କଥା ।" ଅବୁ କହିଲେ ।

"କିନ୍ତୁ ତମେ ଉପହାର କାହିଁକି ନେଲ ନାହିଁ ?" ରାଜା ପଚାରିଲେ ।

ଅବୁ କହିଲେ, "ଯେପର୍ଯ୍ୟନ୍ତ ଆପଣ ଆମ ପ୍ରସ୍ତାବ ସ୍ୱୀକାର ନ କରିଛନ୍ତି ସେପର୍ଯ୍ୟନ୍ତ ମୁଁ କିପରି ଆପଣଙ୍କ ଉପହାର ସ୍ୱୀକାର କରିବି ।"

ଅବୁଙ୍କର ଉତ୍ତର ଶୁଣି ରାଜା ବହୁତ ଖୁସି ହେଲେ । ସେ କହିଲେ, "ତୁମ ପୂର୍ବରୁ ଅନ୍ୟ ଦେଶରୁ ଆସିଥିବା ଦୂତମାନେ ରାଜକୁମାରୀଙ୍କୁ ଦେଖିବା ମାତ୍ରେହିଁ ନିଜର କର୍ତ୍ତବ୍ୟ ଭୁଲିଯା'ନ୍ତି ଓ ଖାଲି ତାଙ୍କୁହିଁ ଚାହିଁ ରହନ୍ତି



ଅପଲକ ନୟନରେ । ଆଉ ସେମାନେ କଥା କହିବାକୁ ଆରମ୍ଭ କରିବା ମାତ୍ରେ ସେମାନଙ୍କ ମୂର୍ଖତା ହିଁ ପ୍ରକାଶ ପାଏ । ତା' ଛଡ଼ା ଉପହାର ଦେଖି ସମସ୍ତେ ଭିକାରି ପରି ଝାମ୍ପି ପଡ଼ି ସବୁ ନେଇଯା'ନ୍ତି ।" ଟିକିଏ ରହି ରାଜା କହିଲେ, "ଜାଣ କି ସେସବୁ ବ୍ୟବହାର ପାଇଁ ତାଙ୍କୁ କି ଦଣ୍ଡ ଦିଆଯାଏ ? ଦେଖ" ଏଇଆ କହି ରାଜା ନିକଟସ୍ଥ ପ୍ରକୋଷ୍ଠର ଗୋଟିଏ ଝରକା ଖୋଲିଦେଲେ । ସେଠାରେ କେତେ ଦେଶର ଦୂତ ସବୁ ବନ୍ଦୀ ହୋଇଥା'ନ୍ତି ।"

ତା'ପରେ ରାଜା ଅବୁଙ୍କୁ କହିଲେ, "ଏବେ ତୁମ ରାଜାଙ୍କ ପ୍ରସ୍ତାବରେ ମୁଁ ରାଜି । ଏବେ ଉପହାର ସବୁ ତମେ ନେଇ ଯାଅ ।"

ମାସକ ମଧ୍ୟରେହିଁ ତୁର୍କୀର ରାଜକୁମାରୀଙ୍କ ସହିତ ଅଲ୍ଲାନ୍ ଶାହାଙ୍କର ବିବାହ ହୋଇଗଲା । ସେଇ ଅବସରରେ ତୁର୍କୀରେ ଥିବା ବନ୍ଦୀ ଉଜୀରମାନେ ମୁକ୍ତି ପାଇଲେ ।

ଅବୁଙ୍କ ସାଫଲ୍ୟ ଯୋଗୁ ରାଜାଙ୍କର ବିବାହ ହୋଇଥିବାରୁ ରାଜାଙ୍କ ନିକଟରେ ଅବୁଙ୍କର ମୂଲ୍ୟ ଆହୁରି ବଢ଼ିଗଲା । ସେଥିରେ ଉଜୀରମାନେ ଆହୁରି ରାଗିଲେ ଓ ଚେଷ୍ଟାକଲେ କପରି ଅବୁଙ୍କ ପ୍ରାଧାନ୍ୟରୁ ନିଜକୁ ମୁକ୍ତ କରିବେ ।

ସେଥିପାଇଁ ତିନି ଉଜୀରଯାକ ବସି ଗୋଟିଏ ଉପାୟ ଚିନ୍ତା କଲେ । ସେ କାମର ସାଫଲ୍ୟ ପାଇଁ ସେମାନେ ରାଜାଙ୍କ ଦୁଇ ସେବକଙ୍କୁ ଅନେକ ଲାଞ୍ଚ ଦେଇ ପ୍ରଥମେ ହାତରେ ରଖିଲେ ଓ କ'ଣ କରିବାକୁ ହେବ ବୁଝାଇ ଦେଲେ ।

ଦିନେ ରାଜାଙ୍କ ଶୟନ ଅବସ୍ଥାରେ ସେବକ ଦୁହେଁ ପାଦସେବା କରୁ କରୁ ନିଜ ଭିତରେ କଥାବାର୍ତ୍ତା କଲେ । ଜଣେ କହିଲା, "ଆରେ ସେ ଶଇତାନ୍‌ର କଥା ଶୁଣିଛୁ ?" ଆଉ ଜଣେ କହିଲା, "କି କଥା ? କାହା କଥା ?"

ପ୍ରଥମ ସେବକ : "ଆରେ ସେଇ ଧୂର୍ତ୍ତ, ପାପିଷ୍ଠ, ଶଇତାନ୍ ଯିଏ ରାଜାଙ୍କୁ ହାତରେ ରଖିଛି; ଆଉ କିଏ ହେବ ମ ଆବୁ ମିଆଁ ।"

ଦ୍ୱିତୀୟ ସେବକ : "ମୁଁ ତ କିଛି ଶୁଣିନି । ତୁହ ତ କ'ଣ ଶୁଣିଛ ?"

ପ୍ରଥମ ସେବକ: "ସେ କହୁଛି କି ତା' ଯୋଗୁ ତୁର୍କୀ ରାଜକୁମାରୀ ରାଜାଙ୍କୁ ବିବାହ

କଲେ । ଆହୁରି କହୁଛି ରାଣୀ ତାଙ୍କୁ ଭଲପାନ୍ତି । କଥା ଦେଖ ।"

"ଏଁ, ଏମିତି କଥା ? ମୁଁ ଜାଣିଥିଲି ଲୋକଟା ନୀଚ । ଚତୁର ଲୋକଙ୍କରହିଁ ଦୁଷ୍ଟବୁଦ୍ଧି ଥାଏ । ସେମାନଙ୍କଠାରୁ ଦୂରରେ ରହିବା ଉଚିତ୍ ।" ଦ୍ୱିତୀୟ ସେବକ କହିଲା ।

ସକାଳୁ ଉଠି ରାଜା କିଛି ବିଚାର ନ କରିହିଁ ଅବୁଙ୍କୁ କାରାଗାରରେ ରଖିଲେ ।

କିଛିଦିନ ପରେ ରାଜା ଅଳ୍ପ ଶୋଇଛନ୍ତି ପୁଣି ସେବକ ଦୁଇଜଣଙ୍କର ଝଗଡ଼ା ଶୁଣିଲେ । ଜଣେ କହୁଛି, "ସେଦିନ ରାତିରେ ମୁଁ ଅବୁ ବିରୁଦ୍ଧରେ ବେଶି କହିଛି ଆଉ ତୁ ବେଶି ମୋହର ନେଇଗଲୁ । ମୋ କଥା ଯୋଗୁ ଅବୁକୁ ଦଣ୍ଡ ମିଳିଲା ।" ଆଉ ଜଣେ କହୁଛି, "ମୁଁ ଯଦି ତୋ କଥା କାଟି ଦେଇଥା'ନ୍ତି ରାଜା କ'ଣ ବିଶ୍ୱାସ କରିଥା'ନ୍ତେ ତୋ କଥାରେ । ତେଣୁ ମୋର ଅଧା ପ୍ରାପ୍ୟ ।" ଏପରି ଝଗଡ଼ା କରୁ କରୁ ମରାମରି ହେଲେ । ରାଜା ସିପାହୀଙ୍କୁ ଡାକି ଦୁହିଁଙ୍କୁ ଶାନ୍ତ କରି କଥା କ'ଣ ପଚାରିବାରୁ ଦୁହେଁ ସବୁ ମାନିଗଲେ ଓ ରାଜାଙ୍କ ପାଦତଳେ ପଡ଼ି କ୍ଷମା ମାଗିଲେ ।

ରାଜା ବେଶି ଦୁଃଖିତ ହେଲେ ଯେ ଉଜୀର ଓ ସେବକଙ୍କ କଥାରେ ପଡ଼ି ସେ ବିଚାର ନକରି ଅବୁଙ୍କ ପରି ଭଦ୍ରଲୋକଙ୍କୁ ଦଣ୍ଡ ଦେଇଛନ୍ତି ବୋଲି । ସେ ଅବୁଙ୍କୁ ମୁକ୍ତ କରି ଆଣି କ୍ଷମା ମାଗିଲେ ଓ ତାଙ୍କୁ ରାଜ୍ୟର ପ୍ରଧାନ ମନ୍ତ୍ରୀ କରିଦେଲେ । ଅବୁ ହସି ହସି କହିଲେ, "ହଜୁର୍, ମୁଁ ମୂଳରୁ କହୁଥିଲି ନା ଦୂରରେ ରହି ଆପଣଙ୍କର ସେବା କରିବି ବୋଲି ।

ରାଜା କହିଲେ, "ତା' ସତ । କିନ୍ତୁ ଏପରି ଏକ ଘଟଣା ଯୋଗୁ ଦୁଷ୍ଟବୁଦ୍ଧି ଲୋକ ଧରା ପଡ଼ି ରାଜ୍ୟର କଲ୍ୟାଣ ହୁଏ ଏକଥା କାହିଁ'କି ଭୁଲି ଯାଉଛ ଅବୁ ?" ତନ୍ନ ଉଜୀର କ୍ଷମା ଗୃହିବାକୁ ଆସନ୍ତେ ରାଜା କହିଲେ, "ପ୍ରଧାନମନ୍ତ୍ରୀ ଅବୁହିଁ ତୁମର ବିଚାର କରିବେ ।"



# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ମାର୍ଚ୍ଚ ୧୯୮୪ ସଂଖ୍ୟାରେ ପ୍ରକାଶ ପାଇବ



P. V. Subramaniam



M. C. Morabad

★ ଉଭୟ ଫଟୋ ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଶବ୍ଦ ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଜାନୁଆରି ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ ।
★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ନଭେମ୍ବର ପ୍ରତିଯୋଗିତାର ଫଳ

ପ୍ରଥମ ଫଟୋ : ପୁଷି ମାଉସୀ ଲୋ ପୁଷି ମାଉସୀ, କହନ୍ତୁ ମୋହର ଜଗିଥା ବସି !
ଦ୍ୱିତୀୟ ଫଟୋ : ସଜାଡ଼ ବସିଛି ମନ କରେଣି, କାଲେ କାଟିଦେବ ଚୁଟିକୁମୁଣ୍ଡି !!
ପୁରସ୍କାର ବିଜୟୀ : ବେଣୁଧର ପଣ୍ଡା, ସୁନାବେଡ଼ା ।
ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।



Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India). Controlling Editor: NAGI REDDI.

ପ୍ରବେଶିକା ମୂଲ୍ୟ ବିହୀନ





# ଚନ୍ଦ୍ରମାମୁଁ କ୍ୟାମେଲ
## ରଙ୍ଗ ପ୍ରତିଯୋଗୀତା

**ପୁରସ୍କାର ଜତନ୍ତୁ**
**କ୍ୟାମେଲ**

ପ୍ରଥମ ପୁରସ୍କାର ଟ. ୧୫/-
୩ ଦ୍ବିତୀୟ ପୁରସ୍କାର ଟ. ୧୦/-
୧୦ ତୃତୀୟ ପୁରସ୍କାର ଟ ୫/-
୧୦ ସାର୍ଟିଫିକେଟ

ଏଠୁ ଦିଆଯାଇଥିବା ଦାଗର ପାଖ ଦେଇ କାଟନ୍ତୁ ।

ଏହି ପ୍ରତିଯୋଗିତାରେ ୧୨ ବର୍ଷ ପର୍ଯ୍ୟନ୍ତ ବୟସର ପିଲାମାନେ ଭାଗନେଇ ପାରିବେ । କ୍ୟାମେଲ ରଙ୍ଗ ଦ୍ଵାରା ଉପରେ ଦର୍ଶାଯାଇଥିବା ଚିତ୍ରଟିକୁ ସଂପୂର୍ଣ୍ଣରୂପେ ରଙ୍ଗ କରନ୍ତୁ ଓ ନିମ୍ନରେ ଦିଆଯାଇଥିବା ଠିକଣାକୁ ପଠେଇ ଦିଅନ୍ତୁ—ପୋ. ବକ୍ସ ନଂ. ୯୯୨୮, କୋଲାବା, ବମ୍ବେ-୪୦୦ ୦୦୫।

ବିଗ୍ରରକମଣ୍ଡଳୀଙ୍କ ନିଷ୍ପତ୍ତି ଚୂଡାନ୍ତ ଓ ବାଧ୍ୟତାମୂଳକ ହେବ । ଏ ସଂପର୍କରେ କୌଣସି ଚିଠିପତ୍ରକୁ ପ୍ରଶ୍ରୟ ଦିଆଯିବ ନାହିଁ । ଅନୁଗ୍ରହ କରି କୁପନକୁ କେବଳ ଇଂରାଜୀରେ ପୂରଣ କରନ୍ତୁ ।

Name: .................................................. Age: ....................

Address: ..................................................

..................................................

ପୂର୍ବରୁ ପଠାନ୍ତୁ : 31-1-1984

**CONTEST NO 34**

Vision/CPL 83169 Ori.